# ଜଙ୍ଗଲ ଭିତରକୁ ରାସ୍ତା

( ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ସଂକ୍ଷିପ୍ତ ଜୀବନୀ )

ଅଭୟ ମହାପାତ୍ର

# ଜଙ୍ଗଲ ଭିତରକୁ ରାସ୍ତା

( ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କ ସଂକ୍ଷିପ୍ତ ଜୀବନୀ )


ଲେଖକ

ଅଭୟ ମହାପାତ୍ର



ପ୍ରକାଶକ

ଅଭୟ ମହାପାତ୍ର

ତେଲେଙ୍ଗା ବଜାର

କଟକ

# ଜଙ୍ଗଲ ଭିତରକୁ ରାସ୍ତା

( ଶ୍ରୀ ବଷ୍ଣୁନାଥ ପଟ୍ଟନାୟକଙ୍କ ଜୀବନୀ ).


ଲେଖକ ଓ ପ୍ରକାଶକ

**ଅଭୟ ମହାପାତ୍ର**

ତେଲେଙ୍ଗା ବଜାର

କଟକ



ମୁଦ୍ରଣ

**ପ୍ରିଣ୍ଟୋ-ପ୍ୟାକ୍ କନ୍‌ସର୍ନ**

ଝୁନ୍‌ଝୁନ୍‌ୱାଲା ଭବନ

ବକ୍‌ସି ବଜାର, କଟକ

ମୂଲ୍ୟ—୫

# ସଂଗ୍ରାହକର ନିଜ କଥା

ଭଲ ଲୋକମାନଙ୍କୁ ପାଖରୁ ଦେଖିଲେ ଅତି ସାଧାରଣ ପରି ଜଣାପଡ଼ନ୍ତି । ସେହିପରି ଜଣେ ସାଧାରଣ ଲୋକ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କର ଜୀବନୀ ଏ ବହିରେ ଆପଣ ପଢ଼ିବାକୁ ପାଇବେ । ତାହାଙ୍କୁ କୋରାପୁଟ, ଗଞ୍ଜାମ ଓ ଫୁଲବାଣୀର କେତେକ ଅଞ୍ଚଳରେ ଆଦିବାସୀମାନେ 'ଆଜ୍ଞା' ବୋଲି ଡ଼ାକନ୍ତି । 'ଆଜ୍ଞା' ଏକ ସମ୍ମାନ ସୂଚକ ସମ୍ବୋଧନ, ଗୁରୁଜନମାନେ ଡ଼ାକଲେ ଆଜ୍ଞା କହିବାକୁ ହୁଏ, ଆଜ୍ଞାର ଅର୍ଥ ଆଦେଶ । ବିଶ୍ୱନାଥ ପଟ୍ଟନାୟକ ଜଣେ ଧର୍ମନିଷ୍ଠ ବ୍ୟକ୍ତି ହୋଇଥିବାରୁ ଲୋକେ ତାଙ୍କୁ 'ବିଶ୍ୱନାଥ ଆଜ୍ଞା' ବୋଲି ଡାକୁଥିଲେ । କ୍ରମେ ସେ ସବୁ ଆଦିବାସୀ ଅଞ୍ଚଳରେ ଆଜ୍ଞା କହିଲେ ବିଶ୍ୱନାଥ ଆଜ୍ଞା ବା ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ବୁଝୁଥିଲେ ।

ଭାରତର ବହୁ ସାଧକଙ୍କ ପରି ବିଶ୍ୱନାଥ ଲୋକଲୋଚନରୁ ଦୂରେଇ ଦୂରେଇ ଚଳନ୍ତି । ମୁଁ ଯେତେବେଳେ ୧୯୬୫ ମସିହାରେ କୋରାପୁଟ ଅଞ୍ଚଳକୁ ଯାଏ, ଏହାଙ୍କ ସମ୍ପର୍କରେ ଅନେକ କିମ୍ବଦନ୍ତୀ ଶୁଣିବାକୁ ପାଇଲି ଆଦିବାସୀ ଓ ଅଣଆଦିବାସୀଙ୍କ ଠାରୁ ୧୫ବର୍ଷ କାଳ ତାଙ୍କୁ ଅନୁଧ୍ୟାନ କରିବାକୁ ଚେଷ୍ଟା କଲି, ଶେଷରେ ସ୍ଥିର କଲି ତାଙ୍କର ଜୀବନୀ ଲେଖାହେବା ଉଚିତ, କାରଣ ସମଗ୍ର ଭାରତ-ବର୍ଷରେ ଆଦିବାସୀମାନଙ୍କ ସେବା କରିବାକୁ ଯେତେ ସାଧୁ ସନ୍ଥ, ମିଶନାରୀ, ସମାଜସେବୀ ଓ ରାଜନୈତିକ କର୍ମୀ ବାହାରିଛନ୍ତି ସେ ସମସ୍ତଙ୍କୁ ଆଦିବାସୀ ପ୍ରେମରୁ ଓଜନ କରି ଦେଖିଲେ ମଧ୍ୟ ଏହି ସାଧାରଣ ଲୋକଟିର ପ୍ରେମ ଅଧିକ ଓଜନ ହେବ ବୋଲି ମୋତେ ଜଣାଗଲା ।

ମୁଁ ବିଶ୍ୱନାଥ ପଟ୍ଟନାୟକଙ୍କ ଦ୍ୱାରା ବ୍ୟକ୍ତିଗତ ଭାବେ କୌଣସି ସାଂସାରିକ ବସ୍ତୁ ଲାଭ କରିନାହିଁ । ତାଙ୍କୁ ଧନ୍ଦାପିତ

କରିବା ପଛଆଡ଼େ ମୋର କୌଣସି ଲାଭର ଆଶା ମଧ୍ୟ ନାହିଁ । କିନ୍ତୁ ବିଶ୍ୱନାଥଙ୍କ ପରି ଆଦିବାସୀଙ୍କ ସହ ଏକାକାର ହୋଇଯାଇଥିବା ଲୋକ ଭାରତବର୍ଷରେ ଦେଖିନାହିଁ । ଦାମ୍ଭିକ ପରି ଏ ଯେଉଁ ମନ୍ତବ୍ୟ ପ୍ରକାଶ କଲି, ତାହା ଅନେକ ସମାଜସେବକଙ୍କୁ ବାଧିବ, ବିଶ୍ୱନାଥ ମଧ୍ୟ ଲଜ୍ଜିତ ହେବେ, କାରଣ ସେ ପ୍ରଜ୍ଞାପନବାଦୀ ନୁହନ୍ତି, କେହି ହୁଏତ ଭାବିବେ ଯେ, ମୁଁ ଯେତିକ ନୁହେଁ, ମୋତେ ସେତିକ ବଡ଼ କରିବାକୁ ଚେଷ୍ଟା କରି ଏ ବ୍ୟକ୍ତି ଦୋଷ କରୁଛି । କିନ୍ତୁ ଆଗାମୀଯୁଗର ଇତିହାସକାରମାନେ ହିଁ ମୋର ଦାମ୍ଭିକ ଉକ୍ତିର ଯଥାର୍ଥତା ସଂପର୍କରେ ପର୍ଯ୍ୟାଲୋଚନା କରିବେ ।

ମୋ ପରି ଜଣେ ସାଧାରଣ ଲୋକ ସାଧୁସନ୍ଥମାନଙ୍କୁ ତରାଜୁ ଚଢ଼ାଇ ଓଜନ କରିବା ଏକ ଅପରାଧ ହୋଇପାରେ, ତଥାପି ଇତିହାସ ଲେଖି ନ ଜାଣିବା ହେତୁ, ଅନ୍ଧର ହାତୀ ଦେଖା ନ୍ୟାୟରେ ବିଶ୍ୱନାଥଙ୍କ ଜୀବନକାହାଣୀ ଉପସ୍ଥାପିତ କଲି । ଏହା ଭାବାବେଗ ନୁହେଁ, ଭାରତବର୍ଷରେ ଆଦିବାସୀମାନଙ୍କର ଅଭ୍ୟୁଦୟ ପାଇଁ, ଆଦିବାସୀ ସଂସ୍କୃତିର ବିକାଶ ପାଇଁ ହୁଏତ ଭାବପ୍ରବଣତା ଥାଇପାରେ, କିନ୍ତୁ ଜଣେ ବ୍ୟକ୍ତିକୁ ଅତିରଂଜିତ କରି ଚିତ୍ରଣ କରିବା ଯେ ମାରାତ୍ମକ ଐତିହାସିକ ଭ୍ରମ ହେବ, ଏହା ଭଲ ଭାବେ ଜାଣି, ବିଶ୍ୱନାଥଙ୍କ ଚିତ୍ର, ତାଙ୍କର ପରି କରିବାକୁ ଚେଷ୍ଟା କରିଛି ।

ସେହି ଦରିଦ୍ର ଆଦିବାସୀଙ୍କ ସହ ଏକାକାର ହେବାକୁ ଚେଷ୍ଟା କରୁଥିବା ଅନ୍ୟଜଣେ ନିଷ୍ଠାଶୀଳକର୍ମୀ ଶ୍ରୀ ନାଗଭୂଷଣ ପଟ୍ଟନାୟକଙ୍କୁ ଅନୁରୋଧ କରିଥିଲି ପାଣ୍ଡୁଲିପିଟି ପଢ଼ି ମୁଖବନ୍ଧ ଲେଖିଦେବା ପାଇଁ । ନିଜର ଅସୁସ୍ଥତା ସତ୍ତ୍ୱେ ନାଗଭୂଷଣ ଏ ପରିଶ୍ରମ କରିଥିବାରୁ ମୁଁ ତାଙ୍କୁ କୃତଜ୍ଞତା ଜଣାଉଛି ।

# ପ୍ରଥମ ଅଧ୍ୟାୟ

ଗଞ୍ଜାମ ଜିଲ୍ଲାର ବଡ଼ଖେମୁଣ୍ଡି ଜମିଦାରୀ । ବ୍ରହ୍ମପୁର ସଦର ଠାରୁ ପ୍ରାୟ ୨୫ କିଲୋମିଟର ଗଲେ ବଡ଼ଖେମୁଣ୍ଡି ଜମିଦାରଙ୍କ ରହିବା ସ୍ଥାନ ଦିଗପହଣ୍ଡି, ସେଠାରୁ ଶକଟ ରାସ୍ତାରେ ୮ ମାଇଲ ଗଲେ କୁମରଡ଼ା ଗ୍ରାମ । ୧୯୧୬ ମସିହା ନଭେମ୍ବର ମାସ ୧୧ ତାରିଖରେ ବିଶ୍ୱନାଥ ପଟ୍ଟନାୟକ କୁମରଡ଼ା ଗ୍ରାମରେ ଜନ୍ମ ହୋଇ ଥିଲେ । ତାଙ୍କ ପିତାଙ୍କ ନାମ ଉପେନ୍ଦ୍ର ପଟ୍ଟନାୟକ ଓ ମାତାଙ୍କ ନାମ ଇନ୍ଦୁମଣି । ବିଶ୍ୱନାଥଙ୍କର ୪ଜଣ ଭଉଣୀ ଓ ୩ ଜଣ ଭାଇ । ବାପାଙ୍କ ମୃତ୍ୟୁ ବେଳକୁ ବିଶ୍ୱନାଥ ଶ୍ରେଷ୍ଠ ପିଲ ଥିଲେ । ବାପାଙ୍କ ଦେଖିବା ତାଙ୍କର ମନେ ପଡ଼େ ନାହିଁ, ବାପାଙ୍କ ସାନଭାଇଙ୍କର ପିଲା ପିଲ ନଥାନ୍ତି, ସେ ବିଶ୍ୱନାଥ ଓ ଅନ୍ୟ ଭାଇ ଭଉଣୀ ମାନଙ୍କୁ ନିଜ ପିଲାପରି ପାଳିଥାଆନ୍ତି ।

ବିଶ୍ୱନାଥ ଗାଆଁ ଚଟଶାଳୀରେ ପାଠ ପଢ଼ିଲେ ୩ୟ ଶ୍ରେଣୀ ପର୍ଯ୍ୟନ୍ତ । ସେତେବେଳେ ଗଞ୍ଜାମ ଜିଲ୍ଲା ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଭୁକ୍ତ ଥାଏ, ୧୯୨୮ମସିହାରେ ୧୨ବର୍ଷ ବୟସରେ ବିଶ୍ୱନାଥ ଆଜି କାଲିର ଆନ୍ଧ୍ର ପ୍ରଦେଶ ଅନ୍ତର୍ଗତ ଇଚ୍ଛାପୁରମ୍‌କୁ ଗଲେ । ବାପା ଦାଦାଙ୍କ ବୃତ୍ତ ଜମିରୁ ବର୍ଷକୁ ପ୍ରାୟ ୧୦୦ କ୍ୱିଣ୍ଟାଲ ଧାନ ମିଳେ । ନିଜ ବଡ ଭାଇ ଘନଶ୍ୟାମ ପଟ୍ଟନାୟକ ମଧ୍ୟ ଇଂରାଜୀ ପଢ଼ି ଚଟ-ଶାଳୀରେ ପାଠ ପଢ଼ାଉଥିଲେ । ଇଚ୍ଛାପୁରକୁ ଦୂର ଦୂରାନ୍ତରରୁ ପିଲାମାନେ ପଢ଼ିବାକୁ ଯାଉଥିବାରୁ ସେ ଗ୍ରାମର କେତେକ ବ୍ୟକ୍ତି ଏହି ଛାତ୍ର ମାନଙ୍କୁ ନିଜଘରେ ରଖିବାର ବ କରିଥିଲେ ।

ବିଦ୍ୟାଳୟରେ ଛାତ୍ରାବାସର ବ୍ୟବସ୍ଥା ନଥିଲା । ଘର ମାଲିକଙ୍କୁ ଚାଉଳ ଡାଲି କାଠ ଓ ଅଳ୍ପ ପଇସା ଦେଇଦେଲେ ସେମାନେ ପିଲା ମାନଙ୍କ ତତ୍ତ୍ୱ ନେଉଥିଲେ । କକା ଓ ବଡ଼ ଭାଇଙ୍କ ସାହାଯ୍ୟରେ ବିଶ୍ୱନାଥ ଇଚ୍ଛାପୁରରେ ୫ବର୍ଷ ପାଠ ପଢ଼ିଲେ ।

ସେହି ସମୟରେ ଭାରତର ସ୍ୱାଧୀନତା ଆନ୍ଦୋଳନର ଲବଣ ସତ୍ୟାଗ୍ରହ ପର୍ଯ୍ୟାୟ । ବିଶ୍ୱନାଥଙ୍କ ପରି ଶ୍ରେଷ୍ଠ ପିଲାଙ୍କ ପାଖରେ ମଧ୍ୟ ସେହି ଆନ୍ଦୋଳନର ଖବର ପହଞ୍ଚିଲା । ବିଶ୍ୱନାଥଙ୍କର ଅନ୍ୟ ଜଣେ ବଡ଼ଭାଇ ଚାରୁଣୀ ଚରଣ ପଟ୍ଟନାୟକ ଜେଲ ଗଲେ ଏହି ଆନ୍ଦୋଳନରେ । ନିଜ ମାମୁଁ ପୁଅ ଭାଇମାନେ ମଧ୍ୟ ଜେଲ ଯାଇ ଥିଲେ । ବିଶ୍ୱନାଥଙ୍କର ପାଠ ପଢ଼ା ପ୍ରତି ଆଗ୍ରହ କମିଗଲା । ତା'ର ପ୍ରଧାନ କାରଣ ହେଲା, ସେ ସର୍ବସାଧାରଣଙ୍କ ପାଇଁ କିଛି କାମ କରିବେ ବୋଲି ସବୁବେଳେ ଚିନ୍ତାକଲେ । ତା'ଛଡ଼ା ଆଧ୍ୟାତ୍ମିକ ଦିଗରେ ସଫଳତା ଲାଭ କରିବାକୁ ତାଙ୍କର ଅନ୍ୟ ଏକ ଆକାଂକ୍ଷା ଥିଲା । ପିଲାଦିନୁ ତାଙ୍କର ଦେବତା ବିଶ୍ୱାସ ଥିଲା । ବୟସ ବଢ଼ିବାରୁ ଆଗ୍ରହ ବଢିଲା, ମଣିଷ କେମିତି ଭଗବାନଙ୍କ ନିକଟତର ହୁଏ, ସେହିକଥା ଜାଣିବାପାଇଁ ।

ଭାଇମାନେ ୧୯୩୨ରେ ଜେଲରୁ ଫେରି ଦଶା ନିବାରଣ କାମରେ ସମସ୍ତ ହେଲେ । ବିଶ୍ୱନାଥ ୧୯୩୩ରେ ପଢ଼ା ଛାଡ଼ି କୁମରଡା ବୃଟଶାଳୀରେ ଶିକ୍ଷକତା କଲେ । ଦରମା ମାସକୁ ସାତଟଙ୍କା । ସେତେବେଳକୁ ସେ ୮ମ ଶ୍ରେଣୀ ବା ତତ୍କାଳୀନ ଥାର୍ଡ ଫର୍ମ ପାଶ କରିଥିଲେ ।

ବିଶ୍ୱନାଥଙ୍କର ପିଲାଦିନୁ ଆଗ୍ରହ ପୁରୀରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ;ତେଣୁ ପାଠପଢ଼ିଲା ବେଳେ ସେ ଥରେ ଗାଆଁରୁ

ତାହାକୁ ନକହି ଜଗନ୍ନାଥ ଦର୍ଶନକୁ ଚାଲି ଆସିଥିଲେ । ପାଦରେ ଚାଲି ଚାଲି ୭୦ ମାଇଲ ଦୂର ରମ୍ଭାକୁ ଆସି, ସେଇଠୁ ଚିଲିକାରେ ଡଙ୍ଗାରେ ଆସିଲେ କଣାସ ଯାଏ, ପୁଣି ଚାଲିଚାଲି ପୁରୀରେ ହାଜର । ସମାଜ ସେବା ଓ ଆଧ୍ୟାତ୍ମିକତା ମାର୍ଗରେ ନୂଆ ନୂଆ ପଶୁଥିବା ଲୋକମାନଙ୍କ ପାଇଁ ପୁରୀରେ ଆଚାର୍ଯ୍ୟ ହରିହର ଦାସ ଏକ ପଥ ପ୍ରଦର୍ଶକ ରୂପେ କାର୍ଯ୍ୟ କରୁଥାଆନ୍ତି । ସେ ପୁରୀ ସେବା ସମିତିର ପ୍ରାଣ ପ୍ରତିଷ୍ଠାତା ଥିଲେ । ବିଶ୍ୱନାଥ ପୁରୀରେ ଆଚାର୍ଯ୍ୟ ମହାଶୟଙ୍କ ସମ୍ପର୍କରେ ଶୁଣିଲେ । ସେବା ସମିତି ପକ୍ଷରୁ ଦ୍ୱିସ୍ଥିର ହେଉଥିଲା ଯେ ସେବା ସମିତିର ସ୍ୱେଚ୍ଛାସେବକ ମାନେ ପୁରୀ ରଥଯାତ୍ରା ଓ କୋଣାର୍କ ମାଘ ସପ୍ତମୀ ମେଳାରେ ଜନ ସେବା କରି ପାରିବେ । ୧୯୩୩ ରଥ ଯାତ୍ରାକୁ ବିଶ୍ୱନାଥ ପୁରୀ ଆସି ସ୍ୱେଚ୍ଛା ସେବା ଭାବେ କାର୍ଯ୍ୟ କଲେ ।

୧୯୩୪ ମସିହାରେ କ୍ୱେଟା ଭୂମିକମ୍ପ ଅଞ୍ଚଳରେ କାମ କରିବାକୁ ପୁରୀ ସେବା ସମିତି ସ୍ୱେଚ୍ଛା ସେବକ ପଠାଇଲେ । ସେ ଏହି ଦଳରେ ଯିବାକୁ ନାମ ଦେଇଦେଇ ପୁରୀ ଆସିଲେ, କିନ୍ତୁ ସେତେବେଳକୁ ସ୍ୱେଚ୍ଛାସେବୀ ଦଳଟି କ୍ୱେଟା ଚାଲିଗଲେଣି । ତେଣୁ ତାଙ୍କର ଇଚ୍ଛା ପୂରଣ ହେଲା ନାହିଁ । କିନ୍ତୁ ଆଉ ଘରକୁ ଫେରିବାକୁ ଇଚ୍ଛା ହେଲା ନାହିଁ, ସାଙ୍ଗରେ ପଞ୍ଚାନନ ପାତ୍ରୀ ବୋଲି ଜଣେ ସମ-ବୟସ୍କ ଯୁବକ ଥାଆନ୍ତି । ଦୁଇଜଣ କିଶୋର ବିନା ଟିକଟରେ ବସିଲେ କଲିକତା ଅଭିମୁଖୀ ରେଳ ଗାଡ଼ିରେ । କଲିକତାରୁ ବର୍ଦ୍ଧ-ମାନ ଓ ବର୍ଦ୍ଧମାନରୁ ତୀର୍ଥଯାତ୍ରାରେ ବାହାରିଲେ ବୈଦ୍ୟନାଥଧାମ । ବିନା ଟିକେଟ ଯାତ୍ରୀ, ବାଟରେ ଟି. ଟି. ଆଇ ଓହ୍ଲାଇ ଦେଲା, ଯୋଗକୁ ସେଇଠି ଜଣେ ସନ୍ନ୍ୟାସୀ ଦେଖାହେଲେ, ତାଙ୍କର ସାଙ୍ଗରେ ଯିବାକୁ ଏ ଦୁଇଜଣ ଇଚ୍ଛା ପ୍ରକାଶ କଲେ । ପାଖରେ ଦୁଇଅଣା ମାତ୍ର ଥାଏ, ତାହା ଆଜିକାଲିର ୧୨ପଇସା ସଙ୍ଗେ ସମାନ । ବିନା

ଟିକେଟରେ ଏମାନେ ପ୍ରଥମେ ରେଳରେ ବସିଲେ । ମଝିରେ ମଝିରେ ଓ୍ୱାଲବାକୁ ହେଉଥାଏ । ସେତେବେଳେ କିନ୍ତୁ ବାଟରେ ବହୁ ଜାଗାରେ ସାଧୁ ସନ୍ଥ ମାନଙ୍କୁ ଛତ୍ର ଦିଆଯାଉଥାଏ । ବିଶ୍ୱନାଥ ଓ ପଞ୍ଚାନନ ଆଣ୍ଠୁ ଉଆଁ ଖଦଡ ଖଣ୍ଡେ ଖଣ୍ଡେ ପିନ୍ଧିଥିଲେ । ତାଙ୍କ ଗାଁ ପାଖ ନୂଆପଡ଼ାରେ ସୂତାକଟା କେନ୍ଦ୍ର ହୋଇଥିଲା । ଭାଇମାନେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ଥିବାରୁ ଓ ନିଜର ପିଲା ଦିନୁ ଆଗ୍ରହ ଥିବାରୁ ବିଶ୍ୱନାଥ ଅନେକ ଆଗରୁ ଖଦଡ ବ୍ୟବହାର କରୁଥିଲେ । ତୀର୍ଥ ଯାହାରେ ଲୋକମାନେ ଭାବୁଥିଲେ, ବାବାଜୀଙ୍କର ଏ ଦୁଇଟି ଚେଲା ହୋଇଥିବେ । ଏଣୁ ଖାଇବା ପିଇବାର ଅସୁ-ବିଧା ହୁଏ ନାହିଁ । ବାଟରେ ଗଛମୂଳେ ଅବା କାହା ବାରଣ୍ଡାରେ ଶୋଇ ପଡ଼ନ୍ତି । ପୁରୀରୁ ବାହାରିବାର ୧୫ ଦିନ ପରେ ଏମାନେ ଆହ୍ଲାବାଦ ସଙ୍ଗମରେ ହେଉଥିବା କୁମ୍ଭ ମେଳାରେ ପହଞ୍ଚିଗଲେ । 'ସେଠାରେ ସାଧୁମାନଙ୍କ ପାଇଁ ଧାଡ଼ି ଧାଡ଼ି ମଞ୍ଚା ବନ୍ଧା ହୋଇଥାଏ ସାଧାରଣ ଲୋକେ ଶ୍ରଦ୍ଧା କରି ଏସବୁ କରିଥାଆନ୍ତି । ସେ ମଞ୍ଚାରେ ଆମେ ରହିଲୁ । କିନ୍ତୁ ହଠାତ୍ ୨ଦିନ ପରେ ବାବାଜୀଙ୍କ ସଙ୍ଗଛଡ଼ା ହୋଇଗଲୁ । ସେହି ମେଳା ଭିତରେ ଆମେ ତାଙ୍କୁ ଖୋଜି ପାଇ କରିପାରିଲୁ ନାହିଁ । ଆମେ ଦୁଇଜଣ ଭଲ ଭାବେ ହିନ୍ଦି କହିବା ଜାଣି ନଥିଲୁ, ବାବାଜୀ ମାନଙ୍କ କାର୍ଯ୍ୟ କଳାପ ଦେଖି ଦେଖି ଅଧା ଅଧା କଥା ବୁଝି ସେମାନଙ୍କ ମାହାତ୍ମ୍ୟ ବୁଝିବାକୁ ଚେଷ୍ଟାକରୁ, ମୋର ସାଧୁ ହେବାକୁ ଇଚ୍ଛା ଥିଲା, କିନ୍ତୁ ବାଟ ଜଣା ନାହିଁ । ସାଙ୍ଗ ପିଲାଟି ପଳାଇ ଆସିବାକୁ ବ୍ୟଗ୍ର । ତେଣୁ ୮ ଦିନ ପରେ ମେଳାରୁ ପଳାଇ ଆସିଲୁ ।'' ଏକଥା କହନ୍ତି ବିଶ୍ୱନାଥ ତାଙ୍କ ପୁରୁଣା ସ୍ମୃତିରୁ ।

କୁମ୍ଭ ମେଳାରୁ ସେମାନେ ନିଜ ଗାଁ ଆଡ଼କୁ ଫେରିଲେ । ଗାଆଁରେ ପହଞ୍ଚି ବିଶ୍ୱନାଥ ଶିକ୍ଷକ କାମରେ ରହିଲେ । କିନ୍ତୁ ମନ

ଥାଏ ସାଧି ହେବାକୁ, ସେତେବେଳେ କଂଗ୍ରେସ କାମର ଅର୍ଥ ଗଠନ ମୂଳକ କାମ । ପାଖ ଗୋବରା ଗାଁର ବାଞ୍ଛାନିଧି ପଟ୍ଟନାୟକ, ତତ୍କାଳୀନ ନେତା ଦିବାକର ପଟ୍ଟନାୟକ ଓ କୃଷ୍ଣମୂର୍ତ୍ତି ତାଙ୍କୁ କଂଗ୍ରେସ କାମରେ ଲଗାଇଲେ ଘରିଂମାନେ ବାହାଘର ପ୍ରଶ୍ନ ଉଠା-ଇଲେ । କିନ୍ତୁ ବିଶ୍ୱନାଥଙ୍କ ମନରେ ତ ଅନ୍ୟ ଏକ ସ୍ୱପ୍ନ, ତେଣୁ ବାହାଘର କଥା ଭାବିବାକୁ ଅବସର କାହିଁ ? ଭବିଷ୍ୟତରେ ଆଉ କେବେ ସେ ପ୍ରଶ୍ନ ଉଠିନାହିଁ । ଆଚାର୍ଯ୍ୟ ହରିହରଙ୍କ ସହ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀ ଓଡ଼ିଶାରେ ଗଠନ ମୂଳକ କାର୍ଯ୍ୟ କରିବା ପାଇଁ ଆଗୁଆ ହୋଇ ବାହାରି ଥାଆନ୍ତି । ତାଙ୍କ ପାଖରେ କାମ ଶିଖିବା ପାଇଁ ଆଗ୍ରହ ଥାଏ । ସେଥିପାଇଁ ସୂତା କାଟିବାରେ ପୋଖତ ହେବା ଦରକାର । ଶକଟିର କୃପାସିନ୍ଧୁ ପଣ୍ଡା ବ୍ରହ୍ମପୁର ଖଦିଭଣ୍ଡାର ଚଳାଉ ଥାଆନ୍ତି । ତାଙ୍କ ଠାରୁ ଅରଟ ଇତ୍ୟାଦି ନେଇ ବିଶ୍ୱନାଥ ସୂତା କାଟିଲେ ଓ ଅନ୍ୟ ମାନଙ୍କୁ ସେ ସମ୍ପର୍କରେ ଆଗ୍ରହୀ କଲେ ।

ଇତି ମଧ୍ୟରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବ ବୋଲି ସ୍ଥିର ହେଲା ଓ ଗଞ୍ଜାମ ଜିଲ୍ଲା ଓଡ଼ିଶାରେ ମିଶିଗଲା । ଓଡ଼ିଶାର ବୟସ୍କ ନେତାମାନଙ୍କ ସହ ଗଞ୍ଜାମ କୋରାପୁଟର ଏହି ଯୁବକ ମାନଙ୍କର ଯୋଗାଯୋଗ ଘନିଷ୍ଠ ହେଲା । ଗୋପବନ୍ଧୁ ଚୌଧୁରୀ ବରି ଆଶ୍ରମ ସ୍ଥାପନ କରିଥାଆନ୍ତି । ବିଶ୍ୱନାଥ ୧୯୩୭ ମସିହାରେ ସେଠାରେ ତାଲିମ ପାଇବେ ବୋଲି ଦରଖାସ୍ତ କଲେ, କିନ୍ତୁ ସେ ବର୍ଷ ଭର୍ତ୍ତି ହୋଇ ପାରିଲେ ନାହିଁ । ମନ ଦୁଃଖରେ ଥାଆନ୍ତି । ସେ ବର୍ଷ ଗୋପ ବାବୁ ଗାନ୍ଧୀ ସେବା ସଂଘ ବୈଠକରେ ସଘର ଆଗାମୀ ବୈଠକ ଓଡ଼ିଶାରେ କରିବା ପାଇଁ ପ୍ରସ୍ତାବ ଦେଲେ । ଡେଲାଙ୍ଗରେ ଏ ବୈଠକ ହେବ ବୋଲି ସ୍ଥିର ହୋଇଥାଏ. ତା'ର ପ୍ରସ୍ତୁତି କାର୍ଯ୍ୟରେ ଆଚାର୍ଯ୍ୟ ମହାଶୟ, ଗୋପବାବୁ ଓ ରମା ଦେବୀ ୧୯୩୭ ଜୁଲାଇ ଓ ଅଗଷ୍ଟ

ମାସରେ ଗଞ୍ଜାମ ଜିଲ୍ଲାର ବିଭିନ୍ନ ଅଞ୍ଚଳ ଗସ୍ତ କଲେ । ତାଙ୍କ ସହ ବିଶ୍ୱନାଥ କିଛିଦିନ ଗସ୍ତ କଲେ । ୧୯୩୮ରେ ଡେଲଙ୍ଗ ସମ୍ମିଳନୀକୁ ସ୍ୱେଚ୍ଛାସେବକ ହୋଇଗଲେ । ସମ୍ମିଳନୀ ସରିଲାପରେ ସିଧା ଚାଲିଲେ ବର୍ଦ୍ଧା, ତାଲିମ ନେବା ପାଇଁ । ବର୍ଦ୍ଧାର ଆଶ୍ରମ ଜୀବନ ତାଙ୍କ ମନକୁ ଖୁବ ପାଇଗଲା ।

ସେତେବେଳକୁ ଗଡଜାତ ମାନଙ୍କରେ ରାଜା ମାନଙ୍କ ଅତ୍ୟାଚାର ବିରୁଦ୍ଧରେ ଜନ ଅସନ୍ତୋଷ ବଢ଼ି ବଢ଼ି ଆନ୍ଦୋଳନ ରୂପ ନେଇଥାଏ । ତାଳଚେର ପ୍ରଜାମାନେ ମେଳିକରି ଅନ୍ୟ ରାଜ୍ୟକୁ ପଳାଉ ଥାନ୍ତି । ସେହି ହିଜରତ୍ କ୍ୟାମ୍ପର କର୍ମୀ ହିସାବରେ ବିଶ୍ୱ-ନାଥଙ୍କୁ ଗୋପବାବୁ କୋଶଳା, କମଶାଳା ଓ ଧୁଣ୍ଡାପଙ୍କ ଅଞ୍ଚଳକୁ ପଠାଇଲେ । ସେ କ୍ୟାମ୍ପ ସରିଲା ପରେ ବର୍ଦ୍ଧାକୁ ଆସି କିଛିଦିନ ରହି ଚାଲିଲେ ରହାମା, ଚଟୁଆ ଓ ଗଡ଼ ପାରାଦ୍ୱୀପ ଅଞ୍ଚଳକୁ ସୂତାକଟା କ୍ୟାମ୍ପ ଚଳାଇବା ପାଇଁ । ତାଲିମ ସରିଗଲା ପରେ ନିଜ ଗାଆଁକୁ ଫେରି ଗଲେ । ଗାଆଁରେ ୨ । ୩ ମାସ ରହିବା ପରେ ଗୋପବାବୁ ଗାନ୍ଧୀ ସେବା ସଙ୍ଘର ଅଫିସ ଆସିଷ୍ଟାଣ୍ଟ କାମ କରିବା ପାଇଁ ତାଙ୍କୁ ଡକାଇଲେ । ସେ କାମରେ ବର୍ଷଟିଏ ରହିଲେ । ଓଡ଼ିଶାର ଦୁଇଟି ଅଞ୍ଚଳରେ ଯେତେବେଳେ ବ୍ୟାପକ ଭାବେ କପଚାଷ ହେଉଥାଏ, ତେଣୁ ସ୍ଥିର ହେଲା ବିଶ୍ୱନାଥ ପରିଡା ଅନୁଗୁଳ କପାଚାଷୀ ମାନଙ୍କ ଭିତରେ ସୂତାକଟା ଓ ଖଦି ବୁଣା କାମ କରାଇବେ ଓ ବିଶ୍ୱନାଥ ପଟ୍ଟନାୟକ କୋରାପୁଟ ଜିଲ୍ଲାର ଗୁଣୁପୁର ଅଞ୍ଚଳରେ ସେ କାମ କରାଇବେ । ତଦନୁଯାୟୀ ବିଶ୍ୱନାଥ ଗୁଣୁପୁର ଚାଲିଲେ ।

—※—

# ଦ୍ୱିତୀୟ ଅଧ୍ୟାୟ

## ସେ କାଳର କୋରାପୁଟ

୪୦ ବର୍ଷ ତଳର କୋରାପୁଟ ଜିଲ୍ଲା, ଜୟପୁର ଜମିଦାରୀ, ପାଶ୍ଚାତ୍ୟ ଜଗତର ଆଶ୍ଚର୍ଯ୍ୟ ଜନକ ଅଫ୍ରିକା ପରି ସେ କୋରାପୁଟ ଜିଲ୍ଲା । ତ୍ରାଭାଙ୍କୋର, ବରୋଦା ଓ ଅନ୍ୟାନ୍ୟ ବହୁ ବିଖ୍ୟାତ ରାଜ୍ୟ ପରି ଆକାରରେ ଅତି ବିରାଟ ଏହି ଅଞ୍ଚଳଟିର ଶାସକଙ୍କୁ ସ୍ଥାନୀୟ ଲୋକେ ରାଜା କହୁଥିଲେ ମଧ୍ୟ ବ୍ରିଟିଶ ସରକାର ତାଙ୍କୁ ଜମିଦାର ବୋଲି ସ୍ୱୀକାର କରୁଥିଲେ । ରାଜା ଖଜଣା ଅସୁଲ କରନ୍ତି, ବ୍ରିଟିସ ସରକାର ଆଇନ ଶୃଙ୍ଖଳା ଦାୟିତ୍ୱରେ ଥାଆନ୍ତି । ରାଜାଙ୍କର ବହୁ ତଳିଆ କର୍ମଚାରୀ ଗାଁ ଗଣ୍ଡାରେ ରହନ୍ତି, ସରକାରଙ୍କର ଥାନା ମାନଙ୍କରେ ଥିବା ପୋଲିସ କର୍ମଚାରୀ ଗାଁ ଗଣ୍ଡାକୁ ଖେଦିଯାଆନ୍ତି । ଉଭୟଙ୍କର ଗୋଟିଏ ଲକ୍ଷ୍ୟ କୋରାପୁଟ ଜିଲ୍ଲା ବା ଜୟପୁର ଜମିଦାରୀର ପ୍ରଜାମାନେ ନିଜ ମୁଣ୍ଡଖାଳ ତୁଣ୍ଡରେ ମାରି ଯାହା ଉପୁଜାଉଛନ୍ତି, ସେଥିରୁ କିଛି କିଛି ଦେଇ, ଚୁପ ଚାପ ରୁହନ୍ତୁ, ବାହାର ଜଗତ ସହ ଯେତେ କମ୍ ସମ୍ପର୍କ ରହିବ ସେତେ ଭଲ । କିନ୍ତୁ ସେମାନଙ୍କ ଦୁର୍ଯୋଗକୁ ଭୋଟ୍‌ରେ କଂଗ୍ରେସବାଲାଏ ଜିତିଥାଆନ୍ତି । ରାଧା ମୋହନ ସାହୁ, ରାଧାକୃଷ୍ଣ ବିଶ୍ୱାସରାୟ ଓ ସଦାଶିବ ତ୍ରିପାଠୀ ସେ ସମୟରେ କୋରାପୁଟ କଂଗ୍ରେସର ନେତା । ବିଶ୍ୱାସରାୟ ଭିତର ଆଡେ ବୁଲି ଲୋକମାନଙ୍କ ସହ ସମ୍ପର୍କ ରଖିଥାଆନ୍ତି । ଗୁଣୁପୁର ଅଞ୍ଚଳର କେତେକ ତେଲୁଗୁ ଭାଷା ଭାଷୀ ଲୋକ କାପୁଗଣ୍ଡି ରାମମୂର୍ତ୍ତିଙ୍କ ନେତୃତ୍ୱରେ ମାନ୍ଦ୍ରାଜରେ ମିଶିବା ପାଇଁ ଆନ୍ଦୋଳନ କରୁ

ଥାଆନ୍ତି । ରାଧାକୃଷ୍ଣ ବିଶ୍ୱାସରାୟ ଓଡ଼ିଶା ପ୍ରଦେଶର ସ୍ୱାର୍ଥରକ୍ଷା ପାଇଁ ଦୃଢ଼ ଭାବେ ଚେଷ୍ଟା କରୁଥିଲେ । ରାଧାମୋହନ ସାହୁ ଜେଲ୍‌ରୁ ଆସିବା ପରେ ଡିଷ୍ଟ୍ରିକ୍ଟ୍ ବୋର୍ଡ ଚେୟାରମ୍ୟାନ ହେଲେ ଓ ସେହି ସୁଯୋଗରେ ବିଭିନ୍ନ ଅଞ୍ଚଳ ଗସ୍ତ କଲେ । ବିଶ୍ୱାସରାୟ ଉଚ୍ଚ ଦରମାର ଚାକିରି ଛାଡ଼ି କଂଗ୍ରେସରେ ଯୋଗ ଦେଇଥିଲେ ଓ ୧୯୩୮ ରେ ନୂଆପଟ୍ଟନରେ କଂଗ୍ରେସ କର୍ମୀ ତାଲିମ ଶିବିର କରିଥିଲେ । ଗୋପବାବୁ, ଆଚାର୍ଯ୍ୟ ମହାଶୟ ଓ ଗୋକୁଳାନନ୍ଦ ମହାନ୍ତି ସେ କର୍ମୀମାନଙ୍କୁ ତାଲିମ ଦେଇଥିଲେ, କିନ୍ତୁ ଗୁଣୁପୁର ଅଞ୍ଚଳର କୌଣସି କର୍ମୀ ସେ ଶିବିରକୁ ଯାଇ ପାରିନଥିଲେ ।

କୋରାପୁଟ ଆଦିବାସୀର ପ୍ରଧାନ ଶତ୍ରୁ ଥିଲା ଭୟ । ପାହାଡ଼ ଜଙ୍ଗଲ ଘେରିବେଢ଼ରେ ସେମାନେ ଦିନ କାଟୁଥିଲେ, ଆଧୁନିକ ବିଜ୍ଞାନ ସହ ସେମାନଙ୍କର କୌଣସି ସମ୍ପର୍କ ନଥିଲା । ଅଧିକାଂଶ ଲୋକ ରେଳ, ମଟର, ସାଇକେଲ ଓ କଳ କବଜା ଦେଖି ନଥିଲେ । ସହର ବଜାରକୁ ଯିବାର ଆବଶ୍ୟକତା ସେମାନଙ୍କର ନଥିଲା । ଶହେ ଲୋକରୁ ଜଣେ ଜୟପୁର ବା ରାୟଗଡ଼ା ଯାଉଥିଲେ । ଜୟ-ପୁର ଜମିଦାରଙ୍କୁ ସମସ୍ତେ ମହାରାଜା ବୋଲି ରହୁଥିଲେ ଓ ସେମା-ନଙ୍କ ସହ ଜମିଦାରଙ୍କର ପ୍ରତ୍ୟକ୍ଷ ସମ୍ପର୍କ ନଥିଲା । ତାଙ୍କର ଅତି ଉଚ୍ଚ ଶିକ୍ଷିତ ଦେୱାନ ରହୁଥିଲେ ଓ ସେହି ଦେୱାନଙ୍କ ଅଧୀନରେ ରାଜସ୍ୱ ଅଧିକାରୀମାନେ ରହୁଥିଲେ । ତାଙ୍କ ତଳକୁ ଠାଣାଦାର ଅମୀନ ବା ରାଜସ୍ୱ ଅସୁଲକାରୀ । ସେହି ଅମୀନର ଲୋକଙ୍କ ସହ ସମ୍ପର୍କ । ସେ ପାଠ କମ୍ ପଢ଼ିଛି, ରାଜାଘର ଚାକର ବୋଲି ତାର ବଡ଼ ଗର୍ବ, ଦରମା କମ୍ ହେଲେ ମଧ୍ୟ ସେ ଲୋକମାନଙ୍କ ଆଗରେ ବଡ଼ ବୋଲି ଦେଖାଇ ହେବାର ନିଶା, ତେଣୁ ରାଜସ୍ୱ ଅସୁଲ

ଯାଥିରେ ତା'ର ଅଧିକ କଷ୍ଟ ଦରକାର । ଉପର ତହସିଲ୍‌ଦାରଙ୍କୁ ମଧ୍ୟ ସନ୍ତୁଷ୍ଟ କରିବାକୁ ହେବ, କେବଳ ରାଜସ୍ୱ ପଇଠ କରିଦେଲେ ପାଇଟି ତୁଟିବ ନାହିଁ । ସନ୍ତୁଷ୍ଟ ହେବାର ବାଟ ହେଲା ଭେଟି । ତେଣୁ ଏହି ଭେଟି ପ୍ରଥାକୁ ରାଜା ପାଖରେ ଗୋଟାଏ ମୌଖିକ ଆଇନରେ ପରିଣତ କରିବାକୁ ହେବ । ରାଜାଙ୍କୁ ମଧ୍ୟ କଷ୍ଟ ଭେଟି ବ୍ୟବସ୍ଥା କରାଯାଇଛି । ଦଶହରାର ଛେଳି, ମେଣ୍ଢା ଭେଟି ଠାରୁ ବନ୍ଧନ ପର୍ବ ପର୍ବାଣୀ ହେବାପାଇଁ ଜିନିଷ ଭେଟି । ଏହା ନିୟମିତ ରାଜସ୍ୱର ଅନ୍ତର୍ଭୁକ୍ତ ନୁହେଁ, ଶୋଷଣର ଏହି ଯନ୍ତ୍ରଟି କେଉଁ ଯୁଗରୁ ଭାରତର ଅଧିକାଂଶ ସ୍ଥାନରେ ଜନସ୍ୱାର୍ଥର ବିରୋଧୀ ଶାସକମାନେ ଖୋଲି ରଖିଥିଲେ । କୋରାପୁଟରେ ତାହା ଅତି କଡ଼ା କଡ଼ି ଭାବରେ ନହେଲେ ମଧ୍ୟ ବହୁଳଭାବେ ପ୍ରଚଳିତ ଥିଲା । ରାଜାଙ୍କର ଆଧୁନିକତା ସହ ସମ୍ପର୍କ କମ୍, ଦେଓ୍ୱାନମାନେ ଅତ୍ୟାଧୁନିକ, ୧୯୩୬ ମସିହାରେ ଡ଼ିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଜଣେ ହେଲେ ସବୁ ସମସ୍ତ ପାଇଁ । ଏହି ତିନି ସଂସ୍ଥାର ଉପସ୍ଥିତି ଓଡ଼ିଶାର ଅନ୍ୟ କୌଣସି ଅଞ୍ଚଳରେ ହୋଇ ନଥିଲା । କୋରାପୁଟ ୧୦ ହଜାର ବର୍ଗ ମାଇଲର ଏକ ବିରାଟ ଅଞ୍ଚଳ ହୋଇଥିବାରୁ ମୟୂରଭଞ୍ଜ, ବାମଣ୍ଡା, ବଲାଙ୍ଗୀର ଇତ୍ୟାଦି ରାଜ୍ୟ ତା ସଙ୍ଗରେ ତୁଳନୀୟ ନୁହେଁ, ସେଠାରେ ଜିଲା ମାଜିଷ୍ଟ୍ରେଟ ମଧ୍ୟ ରହୁ ନଥିଲେ, ରାଜା ନିଜେ ସର୍ବୋଚ୍ଚ ମାଜିଷ୍ଟ୍ରେଟ ।

ଏ ପରିସ୍ଥିତିରେ କୋରାପୁଟ ରାଜା ବା ଜମିଦାର ଅତ୍ୟଧିକ ସକ୍ରିୟ ହେବା ସମ୍ଭବ ନଥିଲା, ବିଶେଷତଃ ଓଡ଼ିଆ ଓ ତେଲୁଗୁ ଉଭୟ ଗୋଷ୍ଠୀଙ୍କୁ ସନ୍ତୁଷ୍ଟ କରିବାରେ ଧ୍ୟାନ ଯାଉଥିଲା । ତେଣୁ ଶୋଷଣ ସମ୍ପର୍କରେ ଏ ଅନୁସନ୍ଧାନ କରି କର୍ମଚାରୀମାନଙ୍କୁ ଦଣ୍ଡ ଦେବା ଅବସ୍ଥାରେ ସେ ନଥିଲେ । ଏହି ଦୁର୍ବଳତାର ସୁଯୋଗ ନେଇଥିଲେ ଶୋଷକ ଦଳ, ୭ ଲକ୍ଷରୁ ଅଧିକ ଆଦିବାସୀ ଲୋକଙ୍କୁ

ଦ୍ରାପ୍ତ ଏକବିଜାରଣି ଦେଶବାର ଶୋଷଣ ଚେହୁଥିଲେ ବିଭିନ୍ନ ଉପାୟରେ । ବିଶ୍ୱନାଥ ପଟ୍ଟନାୟକଙ୍କ ଜୀବନୀ ଏହି ଶୋଷଣ ବିରୁଦ୍ଧରେ ହୋଇଥିବା ଅହିଂସା ପ୍ରତିବାଦର ଏକ ସାରାଂଶ ମାତ୍ର । ତତ୍କାଳୀନ ଶୋଷଣ ଯନ୍ତ୍ର ସମ୍ପର୍କରେ ବିସ୍ତୃତ ବିବରଣୀ ନଦେଲେ ବିଶ୍ୱନାଥଙ୍କ ସାଧନାର ଗୁରୁତ୍ୱ ସମ୍ପର୍କରେ ବୁଝିହେବ ନାହିଁ । ଗୋତି ବା ଜୀତଦାସ ପ୍ରଥା ତନ୍ମଧ୍ୟରୁ ପ୍ରଧାନ ।

ଓଡ଼ିଶାର ଅନ୍ୟକେତେକ ଅଞ୍ଚଳରେ ବିଶେଷତଃ ଗଡ଼ଜାତ ଅଞ୍ଚଳରେ ଏହା ପ୍ରଚଳିତ ଥିଲା । ଯେଉଁ ଲୋକ ଋଣଦାତା ପାଖରୁ ଋଣ ନେଇଥିବ, ସେ ଯଦି ଇଚ୍ଛାକଲେ ଋଣଦାତା ନିକଟରେ ଶରୀର ଶ୍ରମ କରି ଋଣ ସୁଝିହୋଇ ପାରିବ, ଏହାହିଁ ଗୋତି ପ୍ରଥାର ମୂଳ । ପ୍ରଥାଟି ତାତ୍ତ୍ୱିକ ଦୃଷ୍ଟିରୁ ମନ୍ଦନୁହେଁ । ଟଙ୍କା ଆକାରରେ ଅବା ଶସ୍ୟ ଆକାରରେ ନେଇଥିବା ଋଣ ଶ୍ରମ ଆକାରରେ ଶୁଝିବାକୁ ଚାଲି ବେଳେ ଋଣ ନେଇଥିବା ଲୋକଟି ଶୋଷଣରେ ଅଦୃଶ୍ୟ ଜାଲରେ ପଡ଼ିଯାଏ । ମନେକରନ୍ତୁ ଗୋଟିଏ ଗରିବ ଆଦିବାସୀର ବାପ ମରିଗଲା, ପ୍ରେତକ୍ରିୟା ହେବ । ଭାଇସାହି ଅଡ଼ି ବସିବେ; ଗୋଟିଏ ଟିଣ ମଦ, ଗୋଟିଏ ଛେଳି ଅବା ମେଣ୍ଢା କେଉଁଠି କେଉଁଠି ଗୋଟିଏ ଗାଈ ଅବା ମଇଁଷି ମାରି ତାର ମାଂସରେ ଭୋଜି ଦିଆଯିବା ଉଚିତ । ବିଚରା କରିବଟି ଦଉଡ଼ିଲା ସାହୁକାର ବା ମହାଜନ ବା ଋଣଦାତା ପାଖକୁ । ତିନିଶହ ଟଙ୍କା ଋଣ ଦରକାର । ସାହୁକାର ସର୍ତ୍ତ ଦେବ ତିନିଶହ ଟଙ୍କାର ମାସକୁ ସୁଧ ତିରିଶ ଟଙ୍କା । ତୁ ହୁଏତ ପ୍ରତିମାସ ତିରିଶ ଟଙ୍କା ଲେଖାଏଁ ଶୁଝିଦେବୁ, ନଚେତ୍ ମୋ ଘରେ କାମକର । ସୁଧ ବାବଦକୁ, ଯେଉଁଦିନ ମୂଳ ଦେଇଦେବୁ ସେଦିନ ମୁକୁଳିଯିବୁ । ବସ୍ତୁତଃ ଦେଖାଗଲା ଯେ ତିନିଶହ ଟଙ୍କାକୁ ସେ ଲୋକଟିର ପରିଶ୍ରମକୁ ସର୍ବଦିନ ପାଇଁ କିଣି ନିଆଗଲା । ସେ ତ ନିଜର ସମୁଦାୟ ସମୟ

ଦେଇ ସେମାନେ ସାହୁକାର ଘରେ କାମକଲେ ସୁଧ ବାବଦରେ, ଋଣ ଶୁଝିବା ପାଇଁ କପରି ବ୍ୟବସ୍ଥା କରିପାରିବ ? ସେ ମଲାବେଳକୁ ତା' ପରିବାରର ଅନ୍ୟମାନେ ହୁଏତ ଟଙ୍କା ଦେଇଁ ତାକୁ ମୁକୁଳାଇ ନପାରନ୍ତି । ତେଣୁ ସାହୁକାର ଶୋଷଣ ଯନ୍ତ୍ରର କେନ୍ଦ୍ରରେ ବୁଢ଼ୀ ଆଣୀ ଉଡ଼ି ବସି ଦୟାପରବଶ ହୋଇ ନଷ୍ପତ୍ତି କରନ୍ତି ଯେ ଋଣ ନେଇ-ଥିବା ଲୋକ ଯେତ ଅବସ୍ଥାରେ ସାରାଜୀବନ ରହି ମରିଗଲେ ଆଉ ତା'ର ପରବର୍ତ୍ତୀ ବଂଶଧରଙ୍କୁ ଶୁଝିବାକୁ ପଡ଼ିବନାହିଁ । ଏହାକୁ ଛୁଡ଼ିଣି ଗୋତି କହନ୍ତି । କିନ୍ତୁ ଋଣର ପରିମାଣ ଯଦି ବେଶୀ ହୋଇଥିବ; ତେବେ ଋଣ ଗ୍ରହୀତା ମରିଗଲେ ମଧ୍ୟ ତା'ର ପୁଅ ନାତିମାନେ ଗୋତି ହୋଇ ଶୁଝୁଥିବେ । ଏହାକୁ ଲଗୁଣୀ ଗୋତି କହନ୍ତି ।

**ଗଡ଼ମ୍ ପ୍ରଥା**— ଆଜିକାଲିର ରାଜସ୍ୱ ଆଦାୟ ପାଇଁ ଯେପରି କେତେକଣ୍ଡି ଗାଆଁକୁ ନେଇ ଗୋଟିଏ ଆର . ଆଇ ସର୍କଲ କରାଯାଇଛି, ସେହିପରି ଜୟପୁର ଜମିଦାରୀରେ ରାଜସ୍ୱ ଆଦାୟର ନିମ୍ନତମ ବ୍ୟକ୍ତି ଥିଲେ ମୁଠାଦାର ନାଇକ (ନାୟକ) । ସେମାନଙ୍କୁ ଆଦିବାସୀମାନେ ଫସଲର ଅଂଶ ଦିଅନ୍ତି । ମୁଠାଦାରମାନେ ନିଜର ବର୍ଷସାରର ଚଳଣୀ ପାଇଁ ଏହି ଶସ୍ୟ ନଅନ୍ତି । ତା' ବଦଳରେ ଲୋକମାନଙ୍କୁ କୌଣସି ସୁବିଧା ଦିଆଯାଏ ନାହିଁ ।

ଜମି ଅଧିକାର ସମ୍ପର୍କରେ ରାଜାଙ୍କର ଏକ ବିଚିତ୍ର ବିଶ୍ୱାସ ଥିଲା । ସେ ଭାବୁଥିଲେ ଯେ କୋରାପୁଟ ଜମିଦାରୀର ଯେଉଁସବୁ ଅଞ୍ଚଳରେ କୃଷି ହୋଇପାରିବ ତାହାକୁ ଉଠିଆ କରିବାର ଦାୟିତ୍ୱ ସ୍ଥାନୀୟ ଲୋକଙ୍କର । କଥାଟି ଶୁଣିବାକୁ ଅତି ସୁନ୍ଦର । ତେଣୁ ଆଦିବାସୀମାନଙ୍କୁ ଜମି ଦିଆଯାଏ ରାଜାଙ୍କ ତରଫରୁ । ତାହା ଆଶୀ-ର୍ବାଦରେ ପରିଣତ ନହୋଇ ଅଭିଶାପରେ ପରିଣତ ହୁଏ । ଗଡ଼ଆ,

ପଥୁରିଆ, ପାଣିର ସୁବିଧା ନଥିବା ଜମିକୁ ଆଦିବାସୀ ଲୋକ ଦସ୍ତିକ୍ରରେ ଦିଆଯାଏ, ତୁ ଏହାକୁ ଉଠିଆ କରିବୁ, ବାର୍ଷିକ ଏତକ ରାଜସ୍ୱ ବା ହିସ୍ସୁ ଦେଇଦେବୁ । ସେ ଓ ତା'ର ପରିବାର ଲୋକ ମୁଣ୍ଡ-ଝାଳ ତୁଣ୍ଡରେ ମାରି ସେ ଜମିର ଉନ୍ନତି ସାଧନ କରନ୍ତି । କିନ୍ତୁ ସେ ଜମି ତା ପାଖରେ ସ୍ଥାୟୀଭାବେ ରହେ ନାହିଁ । ଅଣଆଦିବାସୀ ଅନ୍ୟାନ୍ୟ ପରଜାପୁଷ୍ଟଙ୍କ ପରି ଗୃହ୍ନିତ ହୋଇଥା'ନ୍ତି, ଜମି ଆବାଦଯୋଗ୍ୟ ହୋଇଗଲେ କଳେ ବଳେ କୌଶଳେ ତାକୁ କାଣି ନିଅନ୍ତି, ନାମ ମାନ ମୂଲ୍ୟରେ । ହୁଏତ ଆଦିବାସୀର ମଦ ଖାଇବାକୁ ପଇସା ନଥିବ ଅବା ବିବାହ କିମ୍ବା କାହାରି ମୃତ୍ୟୁରେ ଋଣ ନେବା ବାବଦକୁ ଏ ଜମି ବନ୍ଧକ ରହେ ଅବା ବିକି ହୁଏ । ରାଜା ପରୋକ୍ଷରେ ଏ ବିକି ଖର୍ଦ୍ଦିକୁ ଉତ୍ସାହିତ କରନ୍ତି ।

**ବେଠି ପ୍ରଥା –** ରାଜସ୍ୱ କର୍ମଚାରୀ ଠାଣାଦାର ଅମୀନମାନେ ଲୋକଙ୍କୁ ବେଠିରେ ଖଟାଉଥିଲେ । ଏପରିକି ଗୁଣୁପୁରରୁ ଲୋକେ ବେଠିଖଟିବାକୁ ଜୟପୁର ରାଜ ରାଜା ଯାଉଥିଲେ । କୌଣସି ସରକାରୀ କର୍ମଚାରୀ ଯଥା - ପୋଲିସ କନେଷ୍ଟବଲ୍ କିମ୍ବା ଫରେଷ୍ଟ ଗାର୍ଡ ଗଲେ ମଧ୍ୟ ସେ ଯଦି ଆବଶ୍ୟକ କରିବ ତେବେ ସବାରୀ ପରି ଗୋଟିଏ ଯାନରେ ଯାଇପାରୁଥିଲା, ତାକୁ ସ୍ଥାନୀୟ ଭାଷାରେ ଡୋଲି କୁହାଯାଏ । ସେ ଡୋଲିକୁ ୪।୬ ଜଣ ଲୋକ କାନ୍ଧେଇ କାନ୍ଧେଇଁ ପାହାଡ଼ ଉପରେ ନେବାକୁ ପଡୁଥିଲା । ଆଜିକାଲିର ପାଠକ ଜାଣିଲେ ଆଶ୍ଚର୍ଯ୍ୟ ହେବେ ଯେ ରାଜସ୍ୱ ଅମୀନଙ୍କ ସଙ୍ଗରେ ଯାଇଥିବା ରେଷେଇ କରିବା ଡେକ୍‌ଚିକୁ ମଧ୍ୟ ଖଟିଆରେ ବୋହିନେବାକୁ ପଡୁଥିଲା । କୌଣସି ସର୍ବସାଧାରଣ କାର୍ଯ୍ୟପାଇଁ ତ ବେଠି ଖଟାଇବା ସାଧାରଣ କଥାଥିଲା । କିନ୍ତୁ ରାଜାଙ୍କ ରଥଯାତ୍ରା ସମୟରେ ବେଠି, ରାଜାଙ୍କ ନଅର ତିଆରି ହେବା ପାଇଁ ବେଠି, ସରକାରୀ କର୍ମଚାରୀ

ଗସ୍ତରେ ଗଲେ ତାଙ୍କପାଇଁ ଜାଳ କାଠ ସଂଗ୍ରହ କରିବାକୁ ବେଠି ଇତ୍ୟାଦି ଅନେକ ପ୍ରକାର ବେଠି ପ୍ରଚଳନ ଥିଲା । ଏହି ଶରୀର ଶ୍ରମର ପ୍ରତ୍ୟକ୍ଷ ଅବା ପରୋକ୍ଷ ଫଳ ଶ୍ରମିକ ପାଉନଥିଲା ।

**ଶୁଣ୍ଡି ଶୋଷଣ**—ଆଦିବାସୀମାନେ କେଉଁ ପୁରୁଣା ଯୁଗରୁ ମଦ ଖାଉଥିଲେ । ସେମାନେ ନିଜେ ମଦ ତିଆରି କରୁଥିଲେ । ତାଳ ଗଛ ପରି ଏକ ଗଛ ଅଛି, ତା'ର ନାମ ସଲପ ଗଛ, ସେହି ଗଛରେ କଣା କରି ସେ ମଦ କାଢୁଥିବେ, କ୍ରମେ ଶୁଣ୍ଡିମାନେ ସେ ଅଞ୍ଚଳରେ ଆସ୍ଥାନ ଜମାଇ ନିଜେ ମଦ ରାନ୍ଧିଲେ ଓ ଦୋକାନ କରି ବିକ୍ରି କଲେ । ଆଦିବାସୀ ସଲପ ଗଛ କାଟିବା ସମୟରେ କଳି ଝଗଡ଼ା ହେଉଥିଲା । ଅଳ୍ପ ସଂଖ୍ୟକ ସଲପ ଗଛକୁ ବହୁତ ଲୋକ ସଲପ ରସ ପିଇବାରେ ଆଗ୍ରହୀ । ମହୁଲ କମ୍ବା ଗୁଡ଼ଳରୁ ମଦ ତିଆରି କରିବା ସମୟ ସାପେକ୍ଷ ଓ ବହୁ ପରିଶ୍ରମ କଲେ ହୁଏ । ଅବଶ୍ୟ ଏକାବେଳେ ବେଶୀଗୁଡ଼ାଏ ମଦ ବାହାରିବ । ତାକୁ ପୁଣି ରାନ୍ଧିଲେ ସରକାରର ଅବକାରୀ ଲୋକ ଧରିବେ । ତେଣୁ ସରଳତମ ଉପାୟ ହେଲା ଶୁଣ୍ଡି ଠାରୁ ମଦ କିଣି ଖାଇବା । ଶୁଣ୍ଡିର ଶୋଷଣ ଯନ୍ତ୍ର ଅତି ମନୋହର । ଶୁଣ୍ଡିର କଥାବାର୍ତ୍ତା ଅତି ମଧୁର, ଏହା କେବଳ ତତ୍କାଳୀନ ଶୋଷକ ଶୁଣ୍ଡି ମହାଜନମାନଙ୍କ ସମ୍ପର୍କରେ ପ୍ରଯୁଜ୍ୟ, ସମଗ୍ର ଶୁଣ୍ଡି ସମାଜ ପ୍ରତି ଏହା ଆକ୍ଷେପ ନୁହେଁ । ଅନେକ ମଦ ଦୋକାନରେ ଶୁଣ୍ଡିର ବର୍ଣ୍ଣୁଳକାୟା ମେଦବର୍ତ୍ତା ମହିଳା ଅଧିକଲେ ହେବ ସୁନା ଗହଣା ଲଗାଇ ଏକ ଆକର୍ଷଣୀୟ ଭଙ୍ଗୀରେ ବସିଥାଆନ୍ତି ମଦ ବିକ୍ରୀ କରିବାପାଇଁ ଅବା ବିକ୍ରୀରେ ସାହାଯ୍ୟ କରିବାପାଇଁ । ଗୃହକର୍ତ୍ତା ଆଦିବାସୀ ମଦ୍ୟପର ସମସ୍ତ ଜୁଲୁମ ସହିବାକୁ ପ୍ରସ୍ତୁତ ହୋଇଥାଏ । ଆଖିକାନରେ ସତେ ଯେମିତି ଘୋଡ଼ଣୀ ଦିଆଯାଇଥାଏ ଜାପାନର ଛନ ମାଙ୍କଡ଼ଙ୍କ ପରି, ତା'ର ଏକମାତ୍ର ଲକ୍ଷ୍ୟ ଆଦିବାସୀ ଅଣ୍ଡିରୁ

କପଟ ପଇସା ଝରିପଡ଼ିବ । ସେ ଝଗଡ଼ା କଥା କହୁ, ମୁଁ ଶୁଣିବି ନାହିଁ ସେ ଝଗଡ଼ା ବ୍ୟବହାର କରୁ, ମୁଁ ଦେଖିବି ନାହିଁ । ମୁଁ ତାକୁ ଅର୍ଥ ନୈତିକ ଶୋଷଣ କରିବି ସିନା ହାତରେ ମାରିବି ନାହିଁ । ସରକାରୀ କର୍ମଚାରୀ ମାନଙ୍କୁ ଯେକୌଣସି ପ୍ରକାରେ ସନ୍ତୁଷ୍ଟ କରିବି, ପଞ୍ଚ 'ମ' କାର ଦାନ କରି ସେମାନଙ୍କ ମନ କିଣିନେବି । ରାଜ ଘର ଲୋକ ମାନଙ୍କୁ ମଧ୍ୟ ତଦ୍ରୂପ ମୁଗ୍ଧ କରିଦେବି । ମୋ ଯନ୍ତ୍ରରୁ ମୁକୁଳି ଯିବାର ଶକ୍ତି କାହାରି ନାହିଁ । ମୋର କାର୍ଯ୍ୟ ଅର୍ଥ ସଂଗ୍ରହ କରିବା, ଯେକୌଣସି ପ୍ରକାରେ ହେଉ ମୁଁ ଅର୍ଥ ସଂଗ୍ରହ କରିବି ।

**ଅଜ୍ଞତାର ଶିକାର** — କୋରାପୁଟରେ ଥିବା ଅଣ ଆଦିବାସୀ ମାନଙ୍କୁ ଆଦିବାସୀ ମାନେ ଜଙ୍ଗଲ ଭିତରେ ପୂରାଇ ରଖନ୍ତି ନାହିଁ, କିନ୍ତୁ ଅଣ ଆଦିବାସୀ ମାନେ ନିର୍ଲଜ ଭାବେ ଆଧୁନିକ ସଭ୍ୟତାର ଖୋଳପା ଭିତରେ ଆଦିବାସୀମାନଙ୍କୁ ଶୋଷଣ କରନ୍ତି । ବାହାରୁ ଆସିଥିବା ବ୍ରାହ୍ମଣ ଓ ସ୍ଥାନୀୟ କୁମୁଟିମାନେ ଗୋତି ପ୍ରଥା ବାହାରେ ମଧ୍ୟ ଋଣଦେଉଥିଲେ । ସେମାନଙ୍କର ଗଣିତ ବନ୍ଧନର କରାମତି ଆଜିର ମାନବିକତାବାଦୀ ଜାଣିବାପରେ ଇତିହାସର କେତେକ ପଦକ୍ଷେପକୁ ସହଜରେ ବୁଝିପାରିବେ । ଯଦି ପୁଟିଏ ବା ୫୦ କିଲୋ ଓଜନର ମାଣ୍ଡିଆ ଆଦିବାସୀକୁ ଋଣ ଦିଆଯାଇଛି, ତେବେ ଅସୁଲ ହେବା ଦିନକୁ ୪ ପୁଟି ବା ୨୦୦ କିଲୋ ସୁଧମୂଳସହ ଅସୁଲ ହେବ । ଆଦିବାସୀ ବିଚରା ଏହି ପ୍ରକାର ଅତ୍ୟାଚାରକୁ ସାଧାରଣ କଥା ବୋଲି ଗ୍ରହଣ କରନ୍ତିଏ, କିନ୍ତୁ ଅଣଆଦିବାସୀ ଭାବେ ମୁଁ ବ୍ଲକ, ଆଦିବାସୀ ଓଲୁ, ତେଣୁ ମୁଁ ତାକୁ ସହଜରେ ଶୋଷଣ କରିନେଉଛି । ଆଦିବାସୀ ପୁଟିଏ ମାଣ୍ଡିଆ ନେବାର ୭ ମାସ ପରେ ମାଣ୍ଡିଆ ଅମଳ ହେବା ବେଳକୁ ଫସଲ ଧରି ଆସି ପହଞ୍ଚେ ସାହୁକାର ବା ଋଣଦାତା ପାଖେ । ଋଣ-

ଦାତା କହିବ, ତୁ ନେଲୁ ପୁଟିଏ, ମୁଁ ଦେଲି ପୁଟିଏ, ତୁ ଘରକୁ ନେଇ ଦେଲୁ ପୁଟିଏ, ସୁଧ ପୁଟିଏ, ଏପରି ମିଶି ୪ ପୁଟି ହେଲା। ଆଦିବାସୀ ହଁ କରେ। ସେଥିରେ ଋଣଦାତାର ସନ୍ତୋଷ, ସେ ଆଦିବାସୀକୁ ଠକିପାରନ୍ତି।

ଅନ୍ୟକେତେକ ଋଣ ଫେରସ୍ତ ନେବା ବେଳେ ଡାକୁଥିବେ ଏକ, ଦୁଇ, ତିନ ମାଣ, ଚାରିମାଣ, ପାଞ୍ଚମାଣ, ୩ ମାଣ, ଚାରିମାଣ, ପାଞ୍ଚମାଣ। ମଝିରେ ୨ ମାଣ ଠକିଦେଲେ ବୋଲି ସେ ବୁଝିନଲା। ତେଲୁଗୁ ସାହୁକାର ତ ଆନ୍ଧର ସୁବିଧାରେ ଠକିବାର ସୁଯୋଗ ପାଏ ଅକଟି, ଛୁଣ୍ଡ୍ରି, ମୁଣ୍ଡ୍ରୁ ଇତ୍ୟାଦି ଡାକ ପାଦାହାରୁ ବା ୧୬ ମାଣ କହୁ କହୁ ପୁଣି ଡାକିବ ଆରୁ ଆରୁ ବା ଛଅମାଣ। ଆଦିବାସୀ ପାଇଁ ତାର ଅର୍ଥ କିଛି ନଥାଏ। ଷୋଳମାଣ ପରେ ୭ମାଣ ବୋଲି ଗଣିଲେ ଆଦିବାସୀର ଗଣିତ ଶାସ୍ତ୍ର ଭୁଲ ହୋଇଯାଏ ନାହିଁ। ସେ ଜାଣେ ଗୋଟିଏ ମାଣ ମାଣ୍ଡିଆ ନେଇଥିଲେ ୬ମାସ ପରେ ମୋତେ ୪ମାଣ କି ୫ମାଣ ଫେରାଇବାକୁ ହେବ। ତେଣିକି ସାହୁକାର ଷୋଳ ପରେ ଛଅ କହୁ କି ସତର କହୁ। ସାହୁକାର ଓ ବ୍ୟବସାୟୀ ଓଜନରେ ଠକନ୍ତି। ସ୍ପ୍ରିଙ୍ଗ୍ ବାଲାନ୍ସକୁ ଭାଙ୍ଗି ଦେଇ ଭୁଲ ଓଜନ ଦେଖାନ୍ତି। ବଡ଼ ମାଣ, ବଡ଼ ସେର ଛଟାଙ୍କିରେ ଜିନଷ କିଣନ୍ତି, ସାନ ମାଣରେ ଜିନଷ ବିକନ୍ତି। ଏ ସବୁ ସତ୍ତ୍ୱେ ଆଦିବାସୀର ଶୋଷକ ଗୋଷ୍ଠୀ ଉପରେ ବିଶ୍ୱାସ ଥାଏ, ଯେ ଭାବେ ରାତି ଅଧରେ କୁମ୍ଭୁଟି କିଛି ପଇସା ଦେଇଦେବ, ଶୁଣ୍ଡି ଉଧାରରେ ମଦ ଦେଇଦେବ। ବ୍ୟବସାୟୀ ଆଗତୁରା ପଇସା ଦେଇଦେବ, ଫସଲ ଅମଳହେଲେ ଶସ୍ତାରେ ଫସଲ ନେଇଯିବେ, ଦରକାର ବେଳେ ସାହାଯ୍ୟ କରୁଛନ୍ତି ତ! ସେହି ଚରିତ୍ରର ଆଦିବାସୀ ପ୍ରତି ଶୋଷକ ସମାଜର ଦୃଷ୍ଟିଭଙ୍ଗୀ

କଥା ମନେପଡ଼ିଲେ ରବୀନ୍ଦ୍ରନାଥଙ୍କର ଗୋଟିଏ ଉକ୍ତି ସ୍ୱତଃ ମନେପଡ଼େ 'ଯାହାକୁ ଦେଇଛ ତୁମେ ଅପମାନ, ସେଇ ଅପମାନ ଦେବ ତୁମକୁ' ।

ଏହି ଐତିହାସିକ ଓ ସାମାଜିକ ପୃଷ୍ଠଭୂମିରେ ବିଶ୍ୱନାଥ ଯାଇ ପହଞ୍ଚିଲେ ଗୁଣୁପୁର ନିକଟସ୍ଥ କୁଜେନ୍ଦ୍ରୀ ଗାଆଁରେ ।

—*—

# ତୃତୀୟ ଅଧ୍ୟାୟ

୧୯୩୧ ମସିହା ଆରମ୍ଭରେ ବିଶ୍ୱନାଥ ଗୁଣୁପୁରରେ ପହଞ୍ଚିଲେ ଓ ସେଠାରୁ ପ୍ରାୟ ୭ ମାଇଲ ଦୂର କୁଜେନ୍ଦ୍ରୀ ଗାଆଁରେ ରହିବା ପାଇଁ ସ୍ଥିର କଲେ । ଗୁଣୁପୁର ସେତେବେଳର ଗୋଟିଏ ବଡ଼ଗାଆଁ । ସେହି ଗାଆଁରେ ଥାନା ଓ ତହସିଲ ଅଫିସ ଥାଏ । ସବ୍‌ଡିଭିଜନାଲ ଅଫିସ୍ ବା Revenue Divisional Office ରାୟଗଡ଼ାରେ । ଗୁଣୁପୁର ସ୍ୱତନ୍ତ୍ର ସବ୍‌ଡିଭିଜନ୍ ହୋଇନଥାଏ । ଗୁଣୁପୁର ଗାଆଁରେ ଆଦିବାସୀଙ୍କ ଅପେକ୍ଷା ଅଣଆଦିବାସୀଙ୍କ ସଂଖ୍ୟାରେ ହେଉଥାଆନ୍ତି ଅଧିକ ତେଣୁ ଆଦିବାସୀମାନଙ୍କ ସହ ରହିବାକୁ ମନସ୍ଥ କରି ବିଶ୍ୱନାଥ କୁଜେନ୍ଦ୍ରୀରେ ରହିଲେ । ଗୋପବାବୁଙ୍କ ନିର୍ଦ୍ଦେଶ ଥିଲା ଯେ ରଚନାତ୍ମକ କର୍ମୀମାନେ ଜେଲ୍ ଯିବା ପାଇଁ ଓ ଆନ୍ଦୋଳନ କରିବା ପାଇଁ ଜୋର୍ ନଦେଇ ଲୋକଙ୍କ ଭିତରେ କାମ କରିବେ । ତଥାପି କଂଗ୍ରେସ୍ ଲୋକଙ୍କୁ କେହି ପାଖରେ ପୂରାନ୍ତି ନାହିଁ । ସାଧାରଣ ଲୋକେ ରଜାଘର କର୍ମଚାରୀ ଓ ବ୍ରିଟିଶ୍ ସରକାରଙ୍କ କର୍ମଚାରୀମାନଙ୍କୁ ଡରନ୍ତି । ବିଶ୍ୱନାଥ ଗୁଣୁପୁର ତାଲୁକର ବହୁ ଗାଆଁ ବୁଲିଲେ ଆସିବାର ପ୍ରଥମ ମାସରେ । ଲୋକେ କହନ୍ତି, ତୁମେ ବ୍ରିଟିଶ୍ ବିରୋଧୀ ଲୋକ, ତୁମକୁ ରହିବାକୁ ଜାଗା ଦେଲେ ଆମେ ହଇରାଣ ହେବୁ । ଶେଷରେ ଏହି କୁଜେନ୍ଦ୍ରୀ ଗାଆଁରେ ମୁଖିଆ ବା ଗମାଙ୍ଗ ତାଙ୍କୁ ନିଜ ପାଖରେ

ରଖିଲେ । ତାଙ୍କନାଆଁ ବାଇରୁ ଗମାଙ୍ଗ । ନିଜଘରେ ମଧ୍ୟ ରଖିଲେ ନାହିଁ, ବାଡ଼ିଣ୍ଡା'ରେ ଖଣ୍ଡିଏ ଖଜୁରି ଚଟେଇ ବେଡ଼େଇ ଦେଲେ । ସେଇଠାରେ ବୈଦ୍ୟନାଥଙ୍କ ଏକକ ସାଧନା ଆରମ୍ଭ ହେଲା ।

ଗାଆଁ ଲୋକେ ଗୋରୁମାର ଦାଣ୍ଡରେ ମାଉଁସ ଶୁଖାଉଥିଲେ, ଘୁଷୁରି ବେଶୀ ପାଳୁଥିଲେ, ସେଗୁଡ଼ିକ ଗାଆଁ ମଇଳା କରୁଥିଲେ । ଆଦିବାସୀମାନେ ସାଧାରଣତଃ କାଙ୍ଗୁ, ସୁଆଁ, ଜନା ଓ ମାଣ୍ଡିଆ ପେଜ ଖାଉଥିଲେ । ସୁଆଁ ଏକପ୍ରକାର ଘାସର ମଞ୍ଜି, କାଙ୍ଗୁ ସାଗୁ ଦାନାଠାରୁ ଛୋଟ, ଜନା ଠିକ ସାଗୁଦାନା ପରି । ଏପରି ଖାଦ୍ୟ ନମିଳିଲେ ଅଭାବରେ ସେମାନେ ସଲପ ଚୂନା, କୋଇଲି ଜାଉ ଓ ବାଘ କନ୍ଦା ଖାଆନ୍ତି । ସଲପ ଗଛ ମଝିରେ ଥିବା ଶସକୁ ଶୁଖାନ୍ତି, କୁଟନ୍ତି ଓ ଗୁଣ୍ଡକରି ପାଣି ସିଝାଇ ଜାଉ କରି ଖାଆନ୍ତି । ଆମ୍ବ କୋଇଲି ବା ଟାକୁଆ ଭିତରେ ଥିବା ଶସକୁ ଶୁଖାଇ ଗୁଣ୍ଡ କରି ଦିଅନ୍ତି । ସେହି ଗୁଣ୍ଡକୁ କନାରେ ବାନ୍ଧି ବହୁଯାଉଥିବା ଝରଣା ପାଣିରେ ଗୋଟିଏ ଦିନ ପୁରା ବୁଡ଼ାଇଦେଇ ରଖିଦିଅନ୍ତି । କୋଇଲିରୁ କଷା ପାଣି ବୁହିଯାଏ । ତାହାକୁ ଜାଉକରି ଖାଇବାକୁ ହୁଏ । ବାଘ କନ୍ଦା ଜଙ୍ଗଲର ଏକ ବିଷାକ୍ତ କନ୍ଦା, ବଡ଼ ବଡ଼ ଗମ୍ଭ ଆଳୁ ପରି ଝଙ୍ଗଲରୁ ଖୋଳି ବାହାର କରାଯାଏ । ଅନ୍ୟ ଖାଦ୍ୟ ନମିଳିଲେ ବାଧ୍ୟ ହୋଇ ଖାଆନ୍ତି । ଏହି କନ୍ଦାକୁ ଖଣ୍ଡ ଖଣ୍ଡ କରି କାଟି ବେଶୀ ପାଣି ଦେଇ ସିଝା ଯାଏ । ପାଣି ନିଗାଡ଼ି ଦେଲେ ବିଷାକ୍ତ ଅଂଶ କମିଯାଏ ସେହି ମୁଣ୍ଡା ଗୁଡ଼ିକୁ ବଡ଼ବଡ଼ ଆଦିବାସୀ ନେଇ ଝରପାଣିରେ ରଖେ କାଳେ ଆହୁରି ବିଷାକ୍ତ ଅଂଶ ବୁହିଯିବ ବୋଲି । ତା'ପରେ ତାକୁ ଖାଏ, ଖାଇଲେ ନିଶା ଖାଇଲା ପରି ଲାଗେ । ସୁଖ ସମୟରେ ଆଦି-ବାସୀ ମହୁଲ ଓ ଅଳସୀର ଗୁଣ୍ଡ ଖାଏ । ମହୁଲ ବା ଟୋଲ ଗଛର ଫୁଲକୁ ମହୁଲ କହନ୍ତି, ସେହି ଫୁଲକୁ ଶୁଖାଇ ସାଇତି ରଖିବାକୁ

ପଡ଼େ । ଅଳସୀ ଏକ ତୈଳବୀଜ, ଖସା କିମ୍ବା ସୂର୍ଯ୍ୟମୁଖୀ ମଞ୍ଜି ପରି ଏଥିରୁ ତେଲ ବାହାରେ । ଏହି ଅଳସୀ ଓ ମହୁଲକୁ ମିଶାଇ କୁଟାଯାଏ ଓ ଗୁଣ୍ଡ ହେଲପରେ ତାକୁ ହାତରେ ଚିପି ଚିପି ଟେକା କରାଯାଏ । ସ୍ଥାନୀୟ ଲୋକେ ଏହାକୁ ଟେକାଏ ଟେକାଏ ଖାଇଦେଇ ବହୁତ ବହୁତ ପାଣିପିଅନ୍ତି, ଏହା ଖାଇଲା ପରେ ଶୋଷ ବେଶୀ ହୁଏ ପାଣି ପିଇଦେଲେ ଭୋକ ହୁଏ ନାହିଁ ।

ବିଶ୍ୱନାଥ ଭୋରୁ ଉଠି ଆଦିବାସୀମାନଙ୍କର କି ସେବା କରି ପାରିବେ ବୋଲି ଚିନ୍ତା କରନ୍ତି । ତାଙ୍କ ଆଖି ଆଗକୁ ଭାସିଆସେ ଅସ୍ୱାସ୍ଥ୍ୟକର ପରିବେଶର ଚିତ୍ର । ସେ ପ୍ରତ୍ୟୁଷରୁ ବାଲିଟି ଓ ଖପରା ହେଲୁଆ ଝାଡ଼ୁ ଧରି ଗାଆଁ ଗଳି ଓ ବାଡ଼ି ପଟରୁ ଘୁଷୁରି ଓ ମଣିଷଙ୍କ ମଇଳା ସଫା କରନ୍ତି । ସକାଳ ହେଲେ, ନିତ୍ୟକର୍ମ ସାରି ସୂତା କାଟନ୍ତି । ବେଳେ ବେଳେ ଆଦିବାସୀଙ୍କ ସହ ଜଙ୍ଗଲକୁ ଯାଉଥିଲେ, ସେମାନେ କନ୍ଦା ଖୋଳିଲା ବେଳେ, କାଠ କାଟିଲା ବେଳେ, ଫଳ ତୋଳିଲା ବେଳେ ଗପସପ କରନ୍ତି । ସ୍ତ୍ରୀ ଲୋକମାନଙ୍କ ସହ ମିଶି ପରିବା କାଟନ୍ତି, ରନ୍ଧା ବଢ଼ାରେ ସାହାଯ୍ୟ କରନ୍ତି, ପୁରୁଷମାନଙ୍କ ସହ ବିଲରେ ତଳି ରୁଅନ୍ତି । ଚାଷ କାମରେ ସାହାଯ୍ୟ କରନ୍ତି । ଆଦିବାସୀଙ୍କର କିପରି ବିକାଶ ହେବ, ସେମାନେ ଭଲ ମଣିଷ ହେବେ ଓ ଅନ୍ୟାୟ ଅତ୍ୟାଚାରର ପ୍ରତିରୋଧ କରିବେ ଏହାହିଁ ବିଶ୍ୱନାଥଙ୍କ ଲକ୍ଷ୍ୟଥିଲା ।

ସେ ରଚନାତ୍ମକ କାର୍ଯ୍ୟ ପାଇଁ ମାସକୁ ପନ୍ଦର ଟଙ୍କା ଭତ୍ତା ପାଉଥିଲେ । ସେଥିରୁ ବାଳିଚୁ ଗମାଙ୍ଗଙ୍କୁ ତିନିଟଙ୍କା ଦେଉଥିଲେ । ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ ଜାଗରଣ ଆଣିବା ପାଇଁ ବାଇରୁର ଝିଅ ପାଣ୍ଡିକୁ ନିଯୁକ୍ତ କରାଗଲା । ସେ ସେହି ପନ୍ଦର ଟଙ୍କାରୁ ଦୁଇଟଙ୍କା ନିଏ । ତା'ର ନାମକୁ ଟିକେ ବଦଳାଇ ଦେଇ ଶାନ୍ତି ଲେଖାଗଲା ।

ତାଙ୍କୁ ବମ୍ବେକୁ ଟ୍ରେନିଂ ପାଇଁ ପଠାଇଲେ । ୬ ମାସ ପରେ ସେ ପୁଣି ଘରକୁ ଫେରିଲା । ଗାଆଁର ସ୍ତ୍ରୀ ଲୋକମାନଙ୍କ ଭିତରେ ସେ ସୂତାକଟା କାମ ଆରମ୍ଭ କଲା । ଭବିଷ୍ୟତରେ କାଳେ ଆନ୍ଦୋଳନ ହେବ, ବିଶ୍ୱନାଥ ଜାଣନ୍ତି, ଯଦି ଅନ୍ୟ ଲୋକଙ୍କୁ ଉପଯୁକ୍ତ ତାଲିମ ଦିଆଯାଇ ନଥିବ, ତେବେ ସେ ଧରା ହୋଇ ଗଲେ, ଆନ୍ଦୋଳନ ଚାଲି ପାରିବ ନାହିଁ । ସେଥିପାଇଁ ଆଦିବାସୀଙ୍କ ବିଶ୍ୱାସ ଭାଜନ ହେବାକୁ ପଡ଼ିବ । ତାଙ୍କର ଏହି ଉଦ୍ୟମ ସଫଳ ହୋଇଥିଲା । ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ଏକା କୃଜେଣ୍ଡ୍ରୀ ଗାଆଁରୁ ୫୬ ଜଣ ଆଦିବାସୀ ମହିଳା ଓ ପୁରୁଷ ଜେଲ୍ ଯାଇଥିଲେ ।

ବିଶ୍ୱନାଥ ପ୍ରକୃତଃ ଆଦିବାସୀଙ୍କ ରୋଷେଇରେ ଖାଆନ୍ତି । ଅବଶ୍ୟ ଆଦିବାସୀମାନେ ଖାଇବାକୁ ଦେବାକୁ ଲଜ୍ଜାପ୍ରକାଶ କରନ୍ତି । ଭାବନ୍ତି ଏ ବଡ଼ ଲୋକ, ଆମ ଘରେ ଖାଇବେ କି, ଦିନେ ଦିନେ ଚୂଡ଼ାନଡ଼ିଆ ପଣିବା କାହାଘରେ ଦେଇଦେଲେ ସେମାନେ ଶିଖାଇ ପଠାଇ ଦିଅନ୍ତି । ବାଇରୁ ଗମାଙ୍ଗ ମଧ୍ୟ କେତେଦିନ ତାଙ୍କଘରେ ରୋଷେଇ କରି ଦିଅନ୍ତି । ବିଶ୍ୱନାଥ ନିରାମିଷାଶୀ । ପିଲାଦିନୁ ମାଂସ ଖାଉନଥିଲେ । ୧୯୩୩ ମସିହାରୁ ମାଛ ଖାଆନ୍ତି ନାହିଁ । ସ୍ଥାନୀୟ ଲୋକେ ମାଣ୍ଡିଆ ପେଜ ସହ ମାଂସ ଖାଆନ୍ତି । ସେ କହିଥାଆନ୍ତି ମାଂସ ରନ୍ଧା ହାଣ୍ଡି ଧୋଇଦେଇ ଆଉଥରେ ମାଣ୍ଡିଆ ପେଜ ରାନ୍ଧି ଦେଲେ ଖାଇବେ । ପେଜରେ ମାଂସ ନପଡ଼ିଲେ ସେ ଗ୍ରାମବାସୀଙ୍କ ସହ ଏକ ପାକରେ ଖାଆନ୍ତି ।

ବିଶ୍ୱନାଥ ସ୍ଥାନୀୟ ଆଦିବାସୀଙ୍କ କଥା ବୁଝିବାକୁ ଅକ୍ଷମ । ସେମାନେ ସଉରା ଓ କନ୍ଧ ଭାଷାରେ କଥା ହୁଅନ୍ତି । ବାଇରୁ ଗମାଙ୍ଗ ସାମାନ୍ୟ ଓଡ଼ିଆ କଥା କହି ପାରନ୍ତି । ସଉରା ଓ କନ୍ଧମାନେ କିଛି କିଛି ଓଡ଼ିଆ ଶବ୍ଦ ବୁଝି ପାରନ୍ତି ଓ କହିପାରନ୍ତି । ଜାତୀୟ ହୋଇ

କନ୍ଧମାନେ ତେଲୁଗୁ ଓଡ଼ିଆ ଓ କନ୍ଧ ଭାଷା ବୁଝି ପାରନ୍ତି । ବିଶ୍ୱନାଥ ଓଡ଼ିଆ ଓ ତେଲୁଗୁ ଭାଷା କହିପାରନ୍ତି । ଯେଉଁଠି କଥା କହିବା ଓ ବୁଝିବାରେ ଅସୁବିଧା ହୁଏ, ସେଠାରେ ବାଇରୁ ଦମାଙ୍ଗ ମଧ୍ୟସ୍ଥର କାମ କରନ୍ତି । ଆଦିବାସୀଙ୍କୁ ବିଶ୍ୱନାଥଙ୍କ କଥା ବୁଝାଇ ଦିଅନ୍ତି ଓ ସଉରମାନଙ୍କ କଥାକୁ ଓଡ଼ିଆରେ ବୁଝାଇ ଦିଅନ୍ତି । ବିଶ୍ୱନାଥ ମଧ୍ୟ ଖୁବ୍ ଶୀଘ୍ର ଦେଶୀଭାଷା ଶିଖିଗଲେ । ପ୍ରଥମେ କଥା ବୁଝିବାକୁ ଚେଷ୍ଟା କଲେ ଓ ଅନେକେ ଶବ୍ଦ ଶିଖିଯାଇ ସେହି ଶବ୍ଦକୁ ଓଡ଼ିଆ ଭାଷା ସହ ମିଶାଇ କହିଲେ । ପୁରୁଷ ଲୋକମାନେ ଓଡ଼ିଆ କଥା ଶୁଣିବାକୁ ଓ କହିବାକୁ ପ୍ରସ୍ତୁତ, କିନ୍ତୁ ସ୍ତ୍ରୀ ଲୋକମାନେ ସେମାନଙ୍କ ନିଜ ଭାଷାରେ କଥା କହିବାକୁ ଓ ଶୁଣିବାକୁ ପସନ୍ଦ କରନ୍ତି । ତେଣୁ ବିଶ୍ୱନାଥ ସେହି ସଉରା ଭାଷାର ଶବ୍ଦ ପ୍ରୟୋଗ କରି ସ୍ତ୍ରୀ ଲୋକମାନଙ୍କ ସହ ମଧ୍ୟ କଥା ହୁଅନ୍ତି ।

ଆଦିବାସୀମାନେ ସାଧାରଣତଃ କୌପୀନ ବା ଲୁଣ୍ଗି ମାରନ୍ତି । ସ୍ତ୍ରୀ ପୁରୁଷ ଉଭୟେ କୌପୀନ ମାରନ୍ତି । ସ୍ତ୍ରୀ ଲୋକମାନେ ଗାମୁଛା ପରି ଛୋଟ ଲୁଗାଟିଏ ପିନ୍ଧନ୍ତି, ସଉରା ସ୍ତ୍ରୀ ଲୋକମାନେ ସେତେବେଳେ ସାଧାରଣତଃ ଅଣ୍ଟାଠାରୁ ଉପରକୁ ବସ୍ତ୍ରାବୃତ କରନ୍ତି ନାହିଁ । ବିଶ୍ୱନାଥଙ୍କର ଦୁଇଖଣ୍ଡି ଚଦର ହେଉଛି ପରିଧାନ । ଖଣ୍ଡିଏ ପିନ୍ଧନ୍ତି, ସେଥିରେ ଆଣ୍ଠୁ ଲୁଚେ ନାହିଁ । ଆଉ ଖଣ୍ଡିଏ ଘୋଡ଼େଇ ହୁଅନ୍ତି । ଏହା ଅଣଆଦିବାସୀମାନଙ୍କ ପୋଷାକଠାରୁ ଢେର କମ୍ । ଆଦିବାସୀମାନଙ୍କ ପୋଷାକଠାରୁ ସାମାନ୍ୟ ବେଶୀ । ତେଣୁ ପୋଷାକ ଖାଦ୍ୟ ପେୟ, ଭାଷା, ଚାଲିଚଳଣ ଓ ଦୃଷ୍ଟିଭଙ୍ଗୀ ଦ୍ୱାରା ସେ ଆଦିବାସୀମାନଙ୍କ ନିକଟତର ହେଲେ । ଆଦିବାସୀମାନଙ୍କର ସମସ୍ୟା ସମ୍ପର୍କରେ ଜାଣିବାକୁ ଚାହିଁଲେ । ସେତେବେଳେ ଗୁଣୁପୁର ଅଞ୍ଚଳର ଆଦିବାସୀଙ୍କ ସମସ୍ୟା ଶୁଣିଲେ ଆଜି ବିସ୍ମିତ ହେବାକୁ ପଡେ ।

ପଟୱାରିଙ୍କୁ ଅମୀନ ବା ରାଜସ୍ୱ କର୍ମଚାରୀଙ୍କୁ ଛେଳି ଭେଟି ଦେବାକୁ ପଡ଼େ । ଏହି କାମପାଇଁ ଅମୀନ ଗାଆଁର ନାଇକକୁ ଦାୟିତ୍ୱ ଦିଏ । ଯଦି ପ୍ରତି ଗାଆଁରୁ ଗୋଟିଏ ଲେଖାଏଁ ଛେଳି ଯିବାର କଥା, ନାଇକମାନେ ଗାଆଁରୁ ୩।୪ଟି ଛେଳିର ଦାମ୍ ମୁତାବକ ଚାନ୍ଦା ଅସୁଲ କରନ୍ତି ଲୋକଙ୍କଠାରୁ । ଗୋଟିଏ ଛେଳି ଅମୀନଙ୍କୁ ଦେଇ ବାକିପଇସା ନାଇକ ରଖିନିଏ । ନାଇକଠୁ ବଡ଼ କର୍ମଚାରୀ ପେଡ଼ିଣୀ ବା ପେଷିମା, ତା'ର ଯୋଡ଼ାଥାଏ, ସେ କେତେଖଣ୍ଡ ଗାଆଁ ଦାୟିତ୍ୱରେ ଥାଏ, ଖଜଣା, ଭେଟି ଇତ୍ୟାଦି ଆଦାୟ କରିବାରେ ସେ ଅମୀନକୁ ସାହାଯ୍ୟ କରେ । ଆଦାୟ କରିଥିବା ଭେଟି ଫସଲ ଓ ଖଜଣା ବା ସିସ୍ତରୁ ସେ କିଛି ଆତ୍ମସାତ୍ କରେ, କିଛି ଅମିନକୁ ନେଇ ଦିଏ । ରଥ ଦଣ୍ଡ ପାଇଁ ଭେଟି ଦେବାକୁ ପଡେ । ଫରେଷ୍ଟ ଗାର୍ଡ଼ର ଜୁଲୁମ୍ କହିଲେ ନସରେ, ଆଦିବାସୀର ଜଙ୍ଗଲ ସହ ସମ୍ପର୍କ ନିବିଡ଼ । ଗାର୍ଡ଼ କହେ, ତୁ ରଜାଘର ଜଙ୍ଗଲକୁ ଯାଇପାରିବୁ ନାହିଁ, କାଠ ଆଣି ପାରିବୁ ନାହିଁ, ଜଙ୍ଗଲ ପୋଡ଼ି ପାରିବୁ ନାହିଁ, ସେଠି ଫସଲ ଚାଷ କରି ପାରିବୁ ନାହିଁ । ତଥାପି ଯଦି ତୁ ମୋତେ ବିନତି କରୁଛୁ, ତେବେ କିଛି ଦେ । ପଇସା ଦେ, ଜଙ୍ଗଲରେ ଯେଉଁ ଫସଲ ହେଉଛି ସେଥିରୁ ଗୋଟାଏ ଅଂଶ ଦେ । ବାଡ଼ିରେ ଝୁଡ଼ା ମଂଜି, ମହୁ, ବାଇଲମଂଜ ହୋଇଛି, ସେଥିରୁ ବି ଗୋଟାଏ ଅଂଶ ଦେ । ପୁଲିସ୍ ବାବୁଙ୍କ ତେଜ ତ ସମସ୍ତଙ୍କଠାରୁ ବେଶୀ । ଗାଆଁରୁ ଭେଟି ନେବା, କେସ୍ ପାଇଁ ମାମୁଲି ନେବା,ଲୋକଙ୍କୁ ବେଠି ଖଟାଇବା ସେ ସମୟର ପୋଲିସ ପକ୍ଷରେ ସାଧାରଣ କଥା । ଉଚ୍ଚ ଜାତିର ଲୋକେ ଆଦିବାସୀମାନଙ୍କଠାରୁ ଚତୁର । ସେମାନେ ସରକାରୀ କର୍ମଚାରୀ ଓ ଅଣଆଦିବାସୀ ଲୋକଙ୍କ ସହ ମିଶିବାକୁ ଭୟ କରନ୍ତି ନାହିଁ । ସେହି ସୁବିଧା ନେଇ ସେମାନେ ଆଦିବାସୀଙ୍କୁ ଡ଼ରାନ୍ତି । କର୍ମଚାରୀଙ୍କ କଥା

ଆଦିବାସୀଙ୍କୁ ବୁଝାଇଲା ବେଳେ ନିଜ ସ୍ୱାର୍ଥ ସପକ୍ଷରେ ବୁଝାଇ ଦିଅନ୍ତି; ସ୍ତ ଯେମିତି କର୍ମବୃନ୍ଦ କହୁଛି, ଏହି ଡମ ଲୋକ କଥାରେ ତୁମେ ବୁଝିବ। ଆଦିବାସୀମାନେ ଏହି ଭାବ ବିନିମୟ ପାଇଁ ମଧ୍ୟ ଡମକୁ ରଖିଥାଆନ୍ତି। ତା'ର ଶୋଷଣ ସତ୍ତ୍ୱେ ତାକୁ ଛାଡ଼ିବାକୁ ନାରାଜ; କହନ୍ତି ଡମ ଆମର ମନ୍ତ୍ରୀ। ଅନେକ ସମୟରେ ଡମମାନେ ଆଦିବାସୀମାନଙ୍କ ଗାଣ୍ଠିରୁ ଲୁଗ୍ଚ ମରି ଖାଇଯାଆନ୍ତି। ସାହୁକାରମାନଙ୍କ ଆଖିରେ ମଧ୍ୟ ସେମାନେ ନିଜର ଲୋକ। ଆଦିବାସୀମାନେ ଡମ ଓ ଘାସିମାନଙ୍କୁ ଛୁଅନ୍ତି ନାହିଁ। ତେଣୁ ସାହୁକାରମାନେ ନିଜର ଋଣ ଅସୁଲ କରିବାପାଇଁ ଘାସି ଓ ଡମମାନଙ୍କୁ ଲଗାଇ ଦିଅନ୍ତି।

ଏହି ପରିସ୍ଥିତିରେ ବିଶ୍ୱନାଥ ନିଜର କାର୍ଯ୍ୟପନ୍ଥା ସ୍ଥିର କରିନେଲେ। ଠିକା ଜମିଦାରମାନଙ୍କର ବେଠି; ଭେଟିର ବିରୋଧ କରିବାଠାରୁ ଆରମ୍ଭ କରି ଆଦିବାସୀଙ୍କୁ ଯେଉଁମାନେ ଶୋଷଣ କରୁଥିଲେ ସମସ୍ତଙ୍କୁ ବିରୋଧ କରିବାପାଇଁ ବିଶ୍ୱନାଥ ଆଦିବାସୀମାନଙ୍କୁ ବୁଝାଇଲେ। ଲୋକଙ୍କର କ୍ଷତି ହେବାରୁ, ରାସ୍ତା ବନ୍ଦ ହୋଇଯାଇଥିବାରୁ ଲୋକେ ତାଙ୍କୁ ସହଯୋଗ କରୁଥିଲେ। ରଥଦେଉଡ଼ି ଭେଟି ଅଞ୍ଚଳରେ ନେଇ ଯେଉଁ ଆଦିବାସୀ ଓ ପେଷଣୀମାନେ ଯାଉଥିଲେ ସେ ସବୁ ବିଶ୍ୱନାଥ ତାଙ୍କର ଆଦିବାସୀ ସହକର୍ମୀମାନେ ନମ୍ରତାର ସହ ବିରୋଧକରି ଭେଡ଼ିତକ ନେଇଯାଉଥିଲେ। ବେଳେ ବେଳେ ଭେଟିଜିନିଷ ନଷ୍ଟ କରିଦେବାକୁ ପଡ଼େ। ବିଶ୍ୱନାଥ ସେହି ସରକାର କର୍ମଚାରୀ ଓ ନାଇକମାନଙ୍କୁ କହନ୍ତି "ଏ ଖବର ରାଜା ଘରକୁ ଜଣାଇ ଦିଅ ଯେ ଆମେ ଭେଟି ବନ୍ଦ କରି ଦେଇଛୁ।" ଜମିଦାରମାନେ ଏ କଥା ଚାର୍ଜି ହଇରାଣ କରିବାକୁ ଉଦ୍ୟମ କରୁଥିଲେ। କିନ୍ତୁ ଲୋକେ ବିଶ୍ୱନାଥଙ୍କ ଉପରେ ବିଶ୍ୱାସ ରଖିଲେ, ତାଙ୍କର ଡାକରେ ସାହାଯ୍ୟ

ଦେବାକୁ ରହିଲେ । ତେଣୁ ଅମୀନଙ୍କ କାରସାଦି ଚଳିଲା ନାହିଁ ।

କ୍ରମେ କ୍ରମେ ପାଖ ଆଦିବାସୀ ଗାଆଁକୁ ଏ ଖବର ପ୍ରସାରିତ ହୋଇଗଲା । ତାଙ୍କର ବେଶ ଜଣେ ଲୋକ, ତାଙ୍କର ଭଲ ପାଇଁ ନିର୍ଭୟ ଭାବରେ ଓ ଅହିଂସା ଉପାୟରେ ଅନ୍ୟାୟର ପ୍ରତିରୋଧ କରୁଛି । ୧୯୮୧ ମସିହାରେ ରାୟଗଡ଼ା ଥାଣା, ଚନ୍ଦ୍ରପୁର ଗୁଡ଼ାରି ଥାଣା, ରାମନାଗୁଡ଼ା, କୈଲାସକୋଟା, ବିଷମକଟକ ଓ ଗୁଣୁପୁର ଅଞ୍ଚଳରୁ ଲୋକେ ଆସି କୁଟେନ୍ଦ୍ରୀରେ ପହଞ୍ଚିଲେ । ଆଦିବାସୀ ମାନଙ୍କର ଗୋଟିଏ ଅନୁରୋଧ ଅତ୍ୟାଚାରକାରୀମାନଙ୍କୁ ଆମେ ଭୟରେ କିଛି କହିପାରୁନାହୁଁ ! ଆମକୁ ସାହସ ଦିଅ । ଅମୀନ୍ ଓ ତା'ର ଲୋକେ ଛେଳି ମାଗୁଛନ୍ତି, ଫରେଷ୍ଟଗାର୍ଡ଼ ପଇସା ମାଗୁଛି, ନହେଲେ ଆମ ପାଇଁ ଜଙ୍ଗଲ ଯିବା ବନ୍ଦ, ଇତ୍ୟାଦି ଇତ୍ୟାଦି ଅଭିଯୋଗ । ତାର ପ୍ରତିକାରର ସୂକ୍ଷ୍ମ ଭାବ ସ୍ଥିରକଲେ ବିଶ୍ୱନାଥ । ତାଙ୍କର ନିଜ ଭାଷାରେ —

" ସବୁ ସମସ୍ୟାର ସମାଧାନ ପାଇଁ ସ୍ଥିରକଲି ଆଦିବାସୀ ମାନଙ୍କୁ କିଛି କିଛି ପାଠ ପଢ଼ାଇବି । କୁଟେନ୍ଦ୍ରୀରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟଟିଏ ଥାଏ । ସ୍କୁଲଟିରେ ୩ୟ ଶ୍ରେଣୀ ଯାଏ ପଢ଼ା ହେଉଥିଲା । ସାହୁକାର ଓ ସରକାରୀ କର୍ମଚାରୀମାନେ କହନ୍ତି ଯେ ଆଦିବାସୀ ପିଲା ପାଠ ପଢ଼ିବା କଥା ନୁହେଁ । ଶିକ୍ଷିତ ହୋଇଗଲେ ତାଙ୍କୁ ଖମାରୀ ମିଳିବନି, ଲୋକେ ବେଠି କରିବେନି, ଭେଟି ଦେବେନି, ତାଙ୍କୁ କେହି ମାନିବେ ନାହିଁ । କୁଟେନ୍ଦ୍ରୀର ଶ୍ରେଷ୍ଠ ପୁଅ ଝିଅ ମାନଙ୍କୁ ସନ୍ଧ୍ୟାରେ ପ୍ରାର୍ଥନା ଶିଖାଏ । କିଛି କିଛି ପଢ଼ାଏ । ଯେଉଁମାନେ ମଇଁଷି ଚରାଇ ଯାଆନ୍ତି, ସେ ପିଲାମାନଙ୍କ ମୁଣ୍ଡରେ ଲଗାଇଥିବା ଟୋପର ବା ପଟ ଝାମ୍ପରେ କାଗଜଟିଏ ଲେଖି ଖୋସିଦିଏ । କହେ, ତୁ ଯାଆ ଗୋରୁ ଚରାଉଥିବୁ, ଯେତେବେଳେ ସୁବିଧା ହେବ, ଯେତେବେଳେ ତୋ'ର ମନ ହେବ,

ଦୁଇ ଅକ୍ଷର ପଢ଼ିବୁ । ”

ଗାନ୍ଧୀ ସେବା ସଙ୍ଘର କର୍ମୀମାନେ କୁଞ୍ଜେନ୍ଦ୍ରୀକୁ ଯାଆନ୍ତି । ଥରେ ଆଚାର୍ଯ୍ୟ ମହାଶୟ ଓ ଗୋପବାବୁ ଯାଇ ପହଞ୍ଚିଲେ ସେବର୍ଷ । ଆଉଥରେ ଈଶ୍ୱରଲାଲ ବ୍ୟାସ, ଛତ୍ରଆବଠ ନିକଟସ୍ଥ କାଳକଳାର ଅଲେଖ ପ୍ରହ୍ଲାଦ ଦାସ ଓ ଧୋବେଇ ଯାଇଥିଲେ । ସେମାନେ ଏହି ପ୍ରାରମ୍ଭିକ କାମ ଦେଖି ଉତ୍ସାହିତ କରନ୍ତି ।

ଗୁଣୁପୁର ଅଞ୍ଚଳରେ ଆଗରୁ କପାଶ୍ଚାଷ ଓ ସୂତାକଟା ହେଉଥିଲା । କୁଞ୍ଜେନ୍ଦ୍ରୀ ପାଖ ଆଖରେ କପାଶ୍ଚାଷର ଅଞ୍ଚଳ । ୧୯୪୨ ମସିହା ପୂର୍ବରୁ ସେହି ଅଞ୍ଚଳରୁ ଥରେ ୫ ହଜାର ଟଙ୍କାର କପା କିଣାଯାଇ ଚରଖାସଙ୍ଘକୁ ପଠାଯାଇଥିଲା, ଏହାହିଁ ଥିଲା ବିଶ୍ୱନାଥଙ୍କ ପାଇଁ ଭିତ୍ତିଭୂମି । ସେ ସ୍ଥାନୀୟ ଚରଖାକୁ ଉନ୍ନତ କଲେ । ଚରଖା ଦେହରେ ଯେଉଁ ପଥର ଲାଗୁଥିଲା, ତା ବଦଳରେ କାଠ ଲଗାଇ ଚରଖା ବୁଲାଇଲେ । ତା’ପରେ କାଠ ବଦଳରେ ଲୁହାରଡ଼୍ କରାଗଲା । ଦାନ୍ତ ଲମ୍ବା ତାକୁଡ଼ି, ସେଥିରେ କାଠଚକ ଲାଗୁଥିଲା । ତାକୁ ବଦଳାଇ ତିଣ ଚକର ଷ୍ଟ୍ରେଟ ତାକୁଡ଼ି ଲଗାଗଲା । ଡମ୍ବମାନେ ପାରମ୍ପରିକ ଶାଳରେ ଲୁଗା ବୁଣନ୍ତି । ସେମାନଙ୍କୁ ବଣା ଓଜନରେ ସୂତା ଦେଉଥିଲେ ସେମାନେ ଲୁଗା ଦିଅନ୍ତି । ୨୭ ଇଞ୍ଚ ଚଉଡ଼ାରୁ ଅଧିକ ପାନିଆ ତନ୍ତରେ ଲାଗି ପାରେ ନାହିଁ । ସେହି ତନ୍ତର ସଂସ୍କାର କରାଗଲା ଓ ଚଉଡ଼ା ଲୁଗା ବୁଣା ଯିବାର ବ୍ୟବସ୍ଥା ହେଲା ।

ଗୁଣୁପୁର ଅଞ୍ଚଳ ସେତେବେଳେ ଜଙ୍ଗଲରେ ଭରପୂର ।

ବିଶ୍ୱନାଥ ନିଜ ଅନୁଭୂତିରୁ କହନ୍ତି “ ସେତେବେଳେ କୁଞ୍ଜେନ୍ଦ୍ରୀ ପାଖରେ ଜଙ୍ଗଲ । ବାଘ ଦିନରେ ଗାଆଁ ପାଖ ଜଙ୍ଗଲରୁ ଲୋକ ନେଇଯାଏ । ମୁଁ ଯେଉଁ ବର୍ଷ ଗଲି, ସେ ବର୍ଷ ହିଁ ନେ ସକାଳେ ଜଣେ ଲୋକ ସହ କଥାବାର୍ତ୍ତା ହୋଇଥିଲା । ସଞ୍ଜ ବେଳକୁ ଶୁଣିଲି

“ସେ ଲୋକଟିକୁ ବାନ୍ଧିନେଇ ଯାଇଛି । ଲୋକଟି ଆଉ ୪।୬ ଜଣଙ୍କ ସହ ଜଙ୍ଗଲକୁ କାଠ ଗୋଟାଇବାକୁ, କନ୍ଦା ଏବଂ ଫଳ ସଂଗ୍ରହ କରିବାକୁ ଯାଇଥିଲା । ସେ ଠାଏ ମହାବଳ ବାଘ ଲୋକଟିକୁ ଛକରଖି ନେଇଗଲା । ତା'ପରେ ଗାଆଁ ଲୋକ ଏକାଠି ହୋଇ ନିଆଁ ଓ ବାଜା ଇତ୍ୟାଦି ନେଇ ଲୋକଟିର ସନ୍ଧାନ ନେବାକୁ ଗଲେ । କିନ୍ତୁ କେବଳ ଦୁଇ ଖଣ୍ଡ ଛିଣ୍ଡା କନାଛଡ଼ା ଲୋକଟିର ପତ୍ତା ମିଳିଲା ନାହିଁ । ବୋଧେ ବାଘ କୌଣସି ଅଗମ୍ୟ ନିକାଞ୍ଜନ ସ୍ଥାନରେ ମଡ଼ଟିକୁ ଲୁଗୁଇ ଦେଇଥିଲା । ଆଉଥରେ ଦିନରେ ମୁଁ ଗୋଟିଏ ଗାଆଁରେ ବସିଥାଏ । ପାଖ ଜଙ୍ଗଲରେ ଟଙ୍କି ଭାଙ୍ଗିବାର ମଡ଼୍ ମାଡ଼୍ ଶବ୍ଦ ହେଲା । ଲୋକଙ୍କୁ ପଚାରିବାରୁ ସେ କହିଲେ ହାତୀପଲ ବରଡ଼ାଳ ଭାଙ୍ଗୁଛନ୍ତି ।”

ହେତେବେଳେ କୋରାପୁଟ ଜିଲ୍ଲାର ଜଙ୍ଗଲ ଅଞ୍ଚଳରେ ମଧ୍ୟ ଲେଣ୍ଢିଆ ଓ ବାଘ ଆଦିବାସୀର ଜୀବନ ନେବାକୁ ସବୁବେଳେ ପ୍ରସ୍ତୁତ ହୋଇ ରହିଥାଆନ୍ତି । ଗାଆଁକୁ କଲରାପଶିଆ ବାଘ ଆସି ଗୋରୁ, ଛେଳି, କୁକୁଡ଼ା, ଘୁଷୁରି ନେଇଯାଏ । ଆଜିକାଲି ଯେଉଁ-ଠାରେ ବାଙ୍ଗୀ ଜଳସେଚନ ଯୋଜନା ହୋଇଛି, ତାକୁ ପାଲି ଅଞ୍ଚଳ ବୋଲି କୁହାଯାଏ । ଥରେ ସେ ଅଞ୍ଚଳରେ ମୁଁ ଯାଉଥାଏ । ସାଙ୍ଗରେ ଦୁଇଜଣ କି ତିନିଜଣ ଲୋକ । ବାଟରେ ମହାବଳ ବାଘ ସହ ଭେଟ ହେଲା । କିନ୍ତୁ ବାଘ ତା ବାଟରେ ଚାଲିଗଲା । ବାଘର ଗୋଟିଏ ଗନ୍ଧ ଅଛି । ସେ ଗନ୍ଧ ଆମେ ଜାଣିପାରୁ କିଛି ଦୂରରୁ, ସେଥିରୁ ଅନୁମାନ କରୁ ପାଖଆଖରେ କେଉଁଠି ବାଘ ଅଛି । ଆଦିବାସୀମାନେ ତ ସେକଥା ଜାଣିବାରେ ଅଭ୍ୟସ୍ତ ଥିଲେ । ମୋତେ ବାଘ ଖାଇଯିବ ବୋଲି କେବେ ମୋର ଭାବନା ଆସେ ନାହିଁ । ବାଘ ଖାଇଯିବ ବୋଲି ଭାବିଲେ ତ କାମ କରିହେବ ନାହିଁ

ଲୋକେ କହି ଦିଅନ୍ତି, ଏ ଅଞ୍ଚଳରେ ବାଘ ଉତ୍ପାତ କରୁଛି, ଏ ରାସ୍ତାରେ ଯାଅ ନାହିଁ, ସେ ରାସ୍ତାରେ ଯାଅ। ବାଘ ମୁହଁରେ ମିଳା ପଡ଼ିନାହିଁ, କିନ୍ତୁ ମ୍ୟାଲେରିଆ ହାତୁଡରେ କେତେଥର ପଡ଼ିଛି। ୪୨ ମସିହା ପୂର୍ବରୁ ଥରେ ଭୀଷଣ ଭାବେ ମ୍ୟାଲେରିଆ ହୋଇଗଲା। ଗୋପ ବାବୁ ବିଶ୍ୱଙ୍କୁ ଡାକିଆଣି ଚିକିତ୍ସା କରାଇଲେ। ସେଠାରେ କିଛିଦିନ ରହିଲି। କିନ୍ତୁ କାମର ଝୁଙ୍କ ବେଶୀ ଥାଏ। ପୁଣି ଗୁଣୁପୁର ଆସିଲି। କାମ ଝୁଙ୍କରେ ଜରର ପ୍ରକୋପ ଜଣାପଡ଼େ ନାହିଁ। ଜରହେଲେ ଜାହା ବାରଣ୍ଡାରେ ଶୋଇପଡେ। ଜର ଛାଡ଼ିଲେ ପୁଣି ଚାଲିବା ଆରମ୍ଭ କରେ। ଚଂଦ୍ରପୁରର ଅନେକ ଗାଆଁରେ କୁଷ୍ଠରୋଗୀ ବହୁ ସଂଖ୍ୟାରେ ଥିଲେ, ଏବେ ମଧ୍ୟ ଅଛନ୍ତି। ଚଂଦ୍ରପୁର ଗସ୍ତରେ ଗଲାବେଳେ ତାଙ୍କ ଘରେ ଖାଏ, ତାଙ୍କରି ପାଖରେ ଶୁଏ।"

ଗୁଣୁପୁରର ପ୍ରହଲ୍ଲାଦ ପାଣିଗ୍ରାହୀ କଂଗ୍ରେସର ବାର୍ତ୍ତା ପ୍ରଚାର କରୁଥାଆନ୍ତି। ସେ କାଳର ଦେଶମିଶ୍ରଣ ନେତା ସ୍ୱର୍ଗତ ଗୋପୀନାଥ ବକ୍ସିପାତ୍ରଙ୍କ ପୁଅ ଶ୍ରୀ କୃଷ୍ଣଚନ୍ଦ୍ର ବକ୍ସିପାତ୍ର ଗୁଣୁପୁର ହାଇସ୍କୁଲରେ ପଢୁଥିଲେ ଓ କଂଗ୍ରେସ କାମ ସହ ସମ୍ପୃକ୍ତ ଥିଲେ। କିନ୍ତୁ ପ୍ରତି ଗାଆଁକୁ ବାରମ୍ବାର ଯିବା ଏମାନଙ୍କ ପକ୍ଷରେ ସମ୍ଭବ ହୁଏନାହିଁ। ବିଶ୍ୱନାଥ ଚାଲି ଚାଲି ଯିବାରେ ପାରଙ୍ଗମ। ସେ ଗୁଣୁପୁର, ଗୁଡ଼ାରୀ, ରାମନାଗୁଡ଼ା, ବିଷମକଟକ ଓ ରାୟଗଡାର କୈଳାସପୁର ବା କୈଳାସ କୋଠା ଅଞ୍ଚଳରେ ବୁଲୁଥିଲେ। ଥରେ ଥରେ କୁଜେନ୍ଦ୍ରିରୁ ୫।୭ଦିନ ପାଇଁ ଚାଲି ଯାଆନ୍ତି। ରାତି ନ କଟାଇଲେ କୌଣସି ଗାଆଁରେ ଲୋକ ମିଳିବେ ନାହିଁ। ଲୋକେ ଦିନସାରା ଜଙ୍ଗଲ ପାହାଡ଼ରେ କଟାନ୍ତି, ଚାଷ କରିବାକୁ, ଖାଦ୍ୟ ସଂଗ୍ରହ କରିବାକୁ, ଓ ଜାଳକାଠ ଆଣିବାକୁ। ସନ୍ଧ୍ୟାରେ ଖାଇପିଇ ସାରିଲେ ପରେ ସେମାନେ ବିଶ୍ୱନାଥଙ୍କପାଖରେ ଆସିଠୁଳ ହୁଅନ୍ତି। ଅଣଆଦିବାସୀ ଗାଆଁ ସହ

ତାଙ୍କର ସମ୍ପର୍କ କମ୍ । ଯେଉଁ ଗାଆଁରେ ଆଦିବାସୀ ଓ ଅଣଆଦି-ବାସୀ ଥାଆନ୍ତି, ସେ ଆଦିବାସୀ ପଡ଼ାରେ ଯାଇ ରହନ୍ତି । ତାଙ୍କ ସଙ୍ଗରେ ଜଣେ ଦୁଇଜଣ ଆଦିବାସୀ ଲୋକ ମଧ୍ୟ ଯାଇ ଥାଆନ୍ତି । ହାତରେ ଗୋଟିଏ ଗୋଟିଏ ପ୍ଲେଟ ମାଟିହାଣ୍ଡି ନେଇ ଯାଇଥାନ୍ତି । ଯେଉଁଠାରେ ରୋଷେଇ କରିବାକୁ ସୁବିଧା ହୁଏ ନାହିଁ, ଘର ଘର ବୁଲି ପେଜ ମାଗି ଆଣନ୍ତି । ସେହି ମାଣ୍ଡିଆ ପେଜକୁ (ଜାଉ) ସାଙ୍ଗ ହୋଇ ଖାଆନ୍ତି । ଚନ୍ଦ୍ରପୁର ଗଲାବେଳେ ସାଙ୍ଗରେ ଚନ୍ଦଧାଣି ଗାଣ୍ଠି ଯାଏ । ଦରକାର ବେଳେ କେଉଁ କେଉଁ ଦିନ ୪୦ମାଇଲ ବାଟ ଚାଲନ୍ତି । କୁଜେନ୍ଦ୍ରୁ ଚାଲିଚାଲି ଭୋର ବେଳାରୁ ବାହାରି ଚନ୍ଦ୍ରପୁରରେ ଉପର ବେଳା ୪ଟା ସମୟକୁ ପହଞ୍ଚି ଯାଆନ୍ତି । କୁଜେନ୍ଦ୍ରୁ ଚନ୍ଦ୍ରପୁର ପ୍ରାୟ ୪୦ ମାଇଲ ରାସ୍ତା ।

ବିଶ୍ୱନାଥ ମହାନ୍ତିଙ୍କ ମନ୍ଦିରରେ ଦୁର୍ଗୀ, କୁରଙ୍ଗାଧାଇ, ପାଣ୍ଡର-ତୋଳା, ଟେଙ୍ଗଲି, ସାଲଇ, ତଳସିକାବାର, କାରଡାଂଗୁ, କାମୁ-ଣପିଣ୍ଡି ବାଲମ୍ବୁକ୍ତ, ବୋଡ଼ବାଲି, ହନୁମନ୍ତପୁର ଇତ୍ୟାଦି ଗାଆଁକୁ ଯାଆନ୍ତି । ଗୁଡାରୀ ଅଞ୍ଚଳର ଖିଲଙ୍ଗରାଇ ଓ ସାରପାଡୁ ଗାଆଁରେ ରହଣି କରନ୍ତି । କୁଜେନ୍ଦ୍ର ପାଖରେ ଗୁଲୁମୁଣ୍ଡା, ନାରାୟଣଗୁଡ଼ା, ତୁମ୍ବାକଣା ଓ କାରଣିଗୁଡା ଇତ୍ୟାଦି ଗାଆଁ ସହ ଘନିଷ୍ଠ ସମ୍ପର୍କ ଥାଏ ।

ମହାତ୍ମା ଗାନ୍ଧି ସ୍ଥିର କରି ଥାଆନ୍ତି ଯେ ରଚନାତ୍ମକ କର୍ମୀ-ମାନେ ରାଜନୈତିକ ବିପ୍ଲବ ପାଇଁ ଅଧିକ ଧ୍ୟାନ ଦେବା ଉଚିତ୍ ନୁହେଁ । ଆନ୍ଦୋଳନ କରିବା ଓ ଜେଲଯିବା କାର୍ଯ୍ୟକ୍ରମକୁ ଗୁରୁତ୍ୱ ଦେଲେ ସେମାନେ ଦେଶ ଗଠନ କରିବା ଓ ସାମାଜିକ ସଂସ୍କାର କରିବା ସମ୍ଭବ ହେବ ନାହିଁ । ସ୍ୱାଧୀନତା ପାଇଁ ଆନ୍ଦୋଳନ ଯେତିକି

ଗୁରୁତ୍ୱପୂର୍ଣ୍ଣ, ରଚନାତ୍ମକ କାର୍ଯ୍ୟ ସେତିକି ଦରକାର । ବିଶ୍ୱନାଥ ଏ କଥାଟିକୁ ସମ୍ପୂର୍ଣ୍ଣ ଗ୍ରହଣ କରି ପାରନ୍ତି ନାହିଁ । କୋରାପୁଟର ଏହି ଶୋଷିତ ଲୋକମାନଙ୍କ ସହ ୨ବର୍ଷ ଏକାଦିକ୍ରମେ ରହିବା ପରେ ସେ ଭାବିଲେ ଲୋକଙ୍କୁ ଅର୍ଥନୈତିକ ନ୍ୟାୟ ଦେବାପାଇଁ ଆନ୍ଦୋଳନର ମଧ୍ୟ ପ୍ରୟୋଜନ ଅଛି । କଲିକତା, ବମ୍ବେ, ପଞ୍ଜାବ, କିମ୍ବା କରାଚୀର କଥା ସ୍ୱତନ୍ତ୍ର । ସେଠାରେ ଏପରି ସରଳ ଲୋକଙ୍କ ସଂଖ୍ୟା କମ୍ ଓ ଶୋଷଣକାରୀମାନେ ଏତେ ନୀଚ ପନ୍ଥାରେ ଶୋଷଣ କରନ୍ତି ନାହିଁ ।

ଦ୍ୱିତୀୟତଃ, ଏହି ଘୋର ଜଙ୍ଗଲ ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନ ପାଇଁ ସଂଗଠନ ନାହିଁ । ମୁଷ୍ଟିମେୟ ଲୋକ ଦଶହଜାର ବର୍ଗମାଇଲ ବିଶିଷ୍ଟ କୋରାପୁଟ ଜିଲାରେ କଂଗ୍ରେସର ବାର୍ତ୍ତା ପ୍ରଚାର କରୁ ଥାଆନ୍ତି । ବିଶେଷତଃ, ରାୟଗଡା ଗୁଣୁପୁର ଅଞ୍ଚଳରେ ଆନ୍ଦୋଳନ ପାଇଁ ଅଲଗା ଶକ୍ତି ମିଳିବା ସମ୍ଭବ ନୁହେଁ । ଯେଉଁଠି ବ୍ରିଟିଶ୍ ସରକାର ଓ ରାଜାଙ୍କର କର୍ମଚାରୀମାନେ ସିଧାସଳଖ ପ୍ରଜାମାନଙ୍କୁ ଶୋଷଣ କରନ୍ତି ଓ ଅନ୍ୟାନ୍ୟ ଶୋଷଣକାରୀ ଲୋକ ସହ ହାତ ମିଳାନ୍ତି, ସେଠାରେ କାର୍ଯ୍ୟପ୍ରଣାଳୀ ସ୍ୱତନ୍ତ୍ର ଧରଣର ହେବ । ଯେଉଁକର୍ମୀ ରଚନାତ୍ମକ କାର୍ଯ୍ୟ କରିବ, ସେହି କର୍ମୀ ଆବଶ୍ୟକ ବେଳେ ଆନ୍ଦୋଳନରେ ଭାଗ ନେବ ।

ସ୍ଥାନୀୟ ସମସ୍ୟାକୁ ଆଖି ଆଗରେ ରଖି ଲୋକଙ୍କ ପାଇଁ ଆନ୍ଦୋଳନର ବାର୍ତ୍ତା ପ୍ରସ୍ତୁତ ହେଲା । ବିଶ୍ୱନାଥଙ୍କ କଥାର ସାରାଂଶ ହେଲା ଦେଶ ସ୍ୱାଧୀନ ହେଲେ ଆଦିବାସୀମାନେ ଭଲରେରହିବେ । ଜୟପୁର ରାଜା ବ୍ରିଟିଶ୍ ସରକାରଙ୍କ ଏଜେଣ୍ଟ । ତେଣୁ ତାଙ୍କ ଲୋକ ହଇରାଣ କରୁଛନ୍ତି, ଜଙ୍ଗଲ ଲୋକଙ୍କଠାରୁ ଜିନିଷ ନେଇ ଯାଉଛନ୍ତି, ବ୍ରିଟିଶ୍ ଚାଲିଗଲେ ଲୋକଙ୍କ ଜିନିଷ ଲୋକଙ୍କ ପାଖରେ ରହିବ, ଆଉ କେହି ଠକି ପାରିବେ ନାହିଁ ।

କପାଚାଷ କରିବାକୁ ହେବ, ସୂତାକଟା ଓ ଲୁଗାବୁଣା କାମ ଭଲଭାବରେ ଚଳିବ । ଆଦିବାସୀ ଲୋକ ଅଧିକ ସଫାସୁତୁରା ହେବ । ଗାଆଁ ଘରପାଖ ପରିଷ୍କାର ରଖିବାକୁ ହେବ । ରୋଗ ହେଲେ ଔଷଧ ଖାଇବାକୁ ହେବ, ସ୍କୁଲରେ ପାଠ ପଢ଼ିବାକୁ ହେବ । ଯେଉଁ ଗାଆଁରେ ଏ କାମ ହେବ ନାହିଁ ସେ ଗାଆଁରେ କର୍ମୀ ରହିବା ଦରକାର ନାହିଁ । ଏହାହିଁ ଥିଲା ବିଶ୍ୱନାଥଙ୍କର ନିର୍ଦ୍ଦେଶ । ଲୋକେ ଏକାମ କଲେ ବିଶ୍ୱନାଥ ତାଙ୍କୁ ଶୋଷଣ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ସାହାଯ୍ୟ କରିବେ ଓ ଶୋଷଣ ବନ୍ଦ କରିବାରେ ନେତୃତ୍ୱ ନେବେ । ଯେଉଁମାନେ ମଦ ଖାଇବେ ନାହିଁ ଓ ଉପଦେଶ ନିୟମ ମାନିବେ, ସେମାନେ କର୍ମୀ ହୋଇ ପାରିବେ । କର୍ମୀମାନେ ଅରଟ ମାର୍କା ଝାଣ୍ଡା ଟେକା କରି ପାରିବେ । ଲୋକମାନଙ୍କୁ ଭଲଭାବେ ବୁଝାଇ ଦିଆଯାଏ ଯେ କର୍ମୀ ହେଲେ ବିପଦ ପଡ଼ିବ, ଦରକାର ବେଳେ ପୋଲିସ୍ ବାନ୍ଧିନେବ, ଜେଲ ଯିବାକୁ ହେବ ।

ସେତେବେଳକୁ ଅଣଆଦିବାସୀ ବିଶ୍ୱନାଥ ପଟ୍ଟନାୟକ ଆଦିବାସୀମାନଙ୍କର ନିଜଲୋକ ହୋଇପାରିଥିଲେ । ବାଇରୁ ଗମାଙ୍ଗ ବିଶ୍ୱନାଥଙ୍କୁ ପ୍ରଥମେ ଜାଗା ଦେଇଥିଲେ, କୁଟେନ୍ଦ୍ରୀ ଗାଆଁରେ ରହିବାକୁ, ସେ ହୁଏତ କଷ୍ଟ କଷ୍ଟ ବୁଝିବାକୁ ଚେଷ୍ଟାକରୁଥିଲେ, ବ୍ରିଟିଶ ସରକାର ଓ ରାଜା ସରକାର ବିରୁଦ୍ଧରେ ଏ ଯେଉଁ ଲୋକଟି ପ୍ରଚାର କରୁଛି, ତାହା ନିଜସ୍ୱାର୍ଥ ପାଇଁ ନୁହେଁ । ଆଦିବାସୀର ବୋଧେ ତା ଦ୍ୱାରା ଉପକାର ହେବ । ପ୍ରଥମେ ବାଇରୁର ଝିଅ ସନ୍ତ୍ରି ବା ଶାନ୍ତ ବର୍ଗରେ କର୍ମୀ ତାଲିମ ନେଲା । ଖଣ୍ଡିଏ ଶାଢ଼ୀ ପାଇଁ ଟ ୩ ଓ ଗୁଲୁମୁଣ୍ଡାର ଭଗବାନ ସେନାପତି ସତରଞ୍ଜି ପାଇଁ ଟ ୨ ଦେଲେ, ସେ ହେଲେ ଆମର ପ୍ରଥମ ଦ୍ରବ୍ୟଦାତା । ଗୁଣୁପୁରର

ପ୍ରହ୍ଲାଦ ପାଣିଗ୍ରାହୀ ସାନ୍ତିରି ସାର ନୀଳକଣ୍ଠ ପାଠେଶ୍ରିଙ୍କ ଗାଆଁ ସ୍କୁଲରେ । ସେ ସ୍କୁଲରେ କେବଳ ବ୍ରାହ୍ମଣପିଲା ଓ ସାହୁକାର ପିଲାମାନେ ପାଠପଢ଼ନ୍ତି । ଆଦିବାସୀମାନେ ତ ଅସ୍ପୃଶ୍ୟ ବୋଲି ଗଣାଯାଉ ନ ଥିଲେ । ତେଣୁ ସେ ୫ମ ଶ୍ରେଣୀଯାଏ ପାଠ ପଢ଼ିଲେ ।

କେବଳ ଭଲକଥା କହିଲେ ଲୋକ ଅନ୍ୟମାନଙ୍କ ବିଶ୍ୱାସ-ଭାଜନ ହୋଇଯାଏ ନାହିଁ । ଲୋକମାନେ ଯାହାକୁ ବଡଲୋକ-ବୋଲି ପ୍ରଥମ ଦୃଷ୍ଟିରେ ସ୍ୱୀକାର କରନ୍ତି, ତାଙ୍କୁ ଅତି ପାଖରୁ ଦେଖିବାକୁ ଚେଷ୍ଟାକରନ୍ତି, ତା'ର କାର୍ଯ୍ୟ କଳାପ ଗୁପ୍ତଭାବରେ ଅନୁସନ୍ଧାନ କରନ୍ତି । ସେ ସବୁ ଲୋକଙ୍କ ଆଗରେ ଯେପରି ଦେଖାଯାଉଛନ୍ତି, ଏକୁଟିଆ ଥିବା ବେଳେ ସେପରି ଦେଖାଯାଉଛନ୍ତି କି ନାହିଁ, ଲୋକେ ତାହା ପରୀକ୍ଷା କରନ୍ତି । ସେମାନେ ଜାଣିବାକୁ ଚାହାନ୍ତି, ବଡଲୋକର ବାହାର ଭିତର ସବୁ ଏକ । ରଘୁନାଥ ନିଜର ପ୍ରସ୍ତୁତି ସଂପର୍କରେ କହନ୍ତି "ମୁଁ ଲୁଣ ଖାଇବା ଛାଡ଼ିଦେଲି । ମୋର ଧାରଣା ଆତ୍ମସଂଯମ ପାଇଁ ଲୁଣ ବିନା ଆହାର ସାହାଯ୍ୟ କରେ । ପରେ ବେମାରି ପଡ଼ିଯିବାରୁ ଲୁଣ ଖାଇଲି । ଗୋପବାବୁଙ୍କ ଦେହତ୍ୟାଗ ପରଠାରୁ ପୁଣି ଲୁଣ ଛାଡ଼ିଦେଲି । ବହୁଦିନ ଧରି ନିମ୍ବପତ୍ର ଖାଇଲି, ନିମ୍ବ ଦାନ୍ତକାଠି ଓ କୋଇଲା ଦାନ୍ତକାଠି ବ୍ୟବହାର କଲି । ମୁଁ ଖରାପ କାମ କରେ ନାହିଁ କି ଆଦିବାସୀମାନେ ମୋତେ କେବେ ଖରାପ ବୋଲି କହନ୍ତି ନାହିଁ । ସେତେବେଳକୁ ମୋତେ ୨୫ , ୨୬ ବର୍ଷ । ମୁଁ ଆଦିବାସୀ ପୁରୁଷ ଓ ମହିଳାମାନଙ୍କ ସହ ଅବାଧ ମିଳାମିଶା କରେ । ଆଦିବାସୀ ଝିଅମାନେ ୧୩, ୧୪ବର୍ଷ ହେବା ପର୍ଯ୍ୟନ୍ତ କେବଳ ଘୁସି ମାରୁଥିଲେ, ତାହା ୩ରୁ ୪ ଫୁଟ ଲମ୍ବ ଓ ୧୦ ଇଞ୍ଚରୁ ୧୨ଇଞ୍ଚ ଓସାରର ଖଣ୍ଡିଏ କନା, ଅଣ୍ଟାରେ କାଛୁଆପରି ବନ୍ଧାହୁଏ ।

ଯେତେବେଳେ ମୁଁ ଜାଣିଲି ଯେ ଆଦିବାସୀ ମହିଳାମାନେ ମଧ୍ୟ ଜେଲ୍‌ଯିବା ଅବଶ୍ୟମ୍ଭାବୀ ହୋଇପଡ଼ିବ, ସେମାନଙ୍କୁ ଲୁଗାପିନ୍ଧାଇବାକୁ ଚେଷ୍ଟାକଲି, ନିଜେ ଲୁଗା ଦିନ୍ତି ଏ । ଯେଉଁଦିନ କୁଳେନ୍ଦ୍ରୀରେ ରହେ ସେହି ଗାଆଁର ପିଲାଙ୍କୁ ଝିଅମାନଙ୍କୁ ପତାକା ଗୀତ ବୋଲିବା ଶିଖାଏ, ପତାକା ଉତ୍ତୋଳନ ଓ ପତାକା ଅବତରଣ କରାଇବା ଶିଖାଏ । ଏହି ସବୁ ସମୟରେ ସାଧାରଣ ଲୋକେ ବୋଧେ ମୋର ବ୍ୟକ୍ତିଗତ ଚରିତ୍ର ଓ ବ୍ୟବହାର ସଂପର୍କରେ ସମୀକ୍ଷା କରନ୍ତି । ଯା' ହେଉ, ଲୋକେ ମୋ କାମରେ ସହଯୋଗ କଲେ । ଆଗରୁ କଲେକ୍ଟର କିମ୍ବା ରେଭିନ୍ୟୁ ଡିଭିଜନାଲ୍ ଅଫିସର କୌଣସି ଗାଆଁକୁ ଗଲେ ତାଙ୍କୁ ଆଦିବାସୀମାନେ ନିଜ ଦୁଃଖ ଜଣାଇବାକୁ ମଧ୍ୟ ଭୟ ଓ ସଂକୋଚ କରୁଥିଲେ, ଭାବୁଥିଲେ ବୋଧେ ତାହା ରାଜଦ୍ରୋହ ବୋଲି ବିବେଚିତ ହେବ । କିନ୍ତୁ ଦିନେ ଲୋକେ ସେ ଭୟ ଛାଡ଼ିଲେ ।

ଥରେ କଲେକ୍ଟର ଗୁଣୁପୁର ଆସିଥିଲେ । କିଏ ଜଣେ କହିଦେଇଛି କୁଳେନ୍ଦ୍ରୀ ଗାଆଁରେ ଲୋକେ କଂଗ୍ରେସ ପତାକା ଉଡ଼ାଉଛନ୍ତି । କଲେକ୍ଟର କୁଳେନ୍ଦ୍ରୀକି ରୁ ପଳାଇଲେ, ବାମ୍ଭଣୀଠାରୁ ଚାଲି ଚାଲି ଆସିଲେ । ଆସି ଦେଖିଲେ ଗାଆଁ ମଝିରେ ଲମ୍ବା ବାଉଁଶ ଅଗରେ ତ୍ରିରଙ୍ଗ ପତାକା ଉଡ଼ୁଛି ! ପଚାରିଲେ, "କିଏ ପତାକା ଉଡ଼ାଉଛି ? ଶୀଘ୍ର ପତାକା ଓହ୍ଲାଇଦିଅ । " ସେ କଥା ଗାଆଁଲୋକ ମାନିଲେ ନାହିଁ । ପ୍ରାୟ ୬୦ଜଣ ଆଦିବାସୀ ଝିଅ ଓ ସ୍ତ୍ରୀଲୋକ ପତାକା ଖୁଣ୍ଟ ଚାରିପଟେ ଘେରିଗଲେ । ହାତକୁ ହାତ ଛନ୍ଦି ଗୋଟିଏ ବୃତ୍ତ କରିଦେଲେ । କଲେକ୍ଟର ସାହେବ ଉପରକୁ କିଛି ଦୁର୍ବଳତା ଜଣାଇଲେ ନାହିଁ । ଉଚ୍ଚ ପ୍ରାଥମିକ ସ୍କୁଲରେ ପ୍ରାୟ ଘଣ୍ଟାଏ ଖଣ୍ଡେ ବସିଲେ ଓ ପୁଣି ଗୁଣୁପୁର ଫେରିଗଲେ । ଲୋକେ

ରଚନାତ୍ମକ କାମ କରିବା ସଙ୍ଗେ ସଙ୍ଗେ ଶୋଷଣ ବିରୁଦ୍ଧରେ ସ୍ୱର ଉଠାଇଲେ ଓ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେଲେ ।”

—❀—

# ୫ମ ଅଧ୍ୟାୟ

## ପାହାଡ଼ର ପ୍ରତିଧ୍ୱନି

## “ଭାରତ ଛାଡ”

କେବଳ କୁଜେଙ୍ଗରେ ନୁହେଁ ଯେଉଁ ଗାଆଁର ଲୋକଙ୍କୁ ଆମ ସାହା ମିଳିଲେ ସେମାନେ ଆନ୍ଦୋଳନ କରିବାକୁ ଓ ଜେଲ ଯିବାକୁ ପ୍ରସ୍ତୁତ ହେଲେ । ରାଧାକୃଷ୍ଣ ବିଶ୍ୱାସରାୟ ଓ ତାଙ୍କ ବଡ଼ଭାଇ କଂଗ୍ରେସ କାମ କରୁଥିଲେ । ୧୯୪୨ ମସିହା ବେଳକୁ ଜୟପୁରର ନନ୍ଦ ପରିବାର ସଂଗ୍ରାମୀ ମାନଙ୍କ ପାଇଁ ବହୁ ପଇସା ଖର୍ଚ୍ଚ କରୁଥିଲେ । ଦେବ ସିଂହ, ଗୌରୀ ରଥ, ହରିବନ୍ଧୁ ଇତ୍ୟାଦି ଜମିଦାର ପରିବାରରୁ ଆନ୍ଦୋଳନରେ ଯୋଗ ଦେଇଥିଲେ । ନନ୍ଦପୁରର ଭଗବାନ ଖେମୁଣ୍ଡୁ, ଉମରକୋଟର ବଳୀ ପୂଜାରୀ ଓ ମାଣ୍ଡିଆର ଲକ୍ଷ୍ମଣ ନାଇକଙ୍କର ଆଦିବାସୀ ମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ଥିଲା । ମହାନନ୍ଦ ବାଗ, ଲକ୍ଷ୍ମୀ ଚନ୍ଦ୍ର ଦାସ ଓ ଦାମୋଦର ସାମନ୍ତରାୟ ଇତ୍ୟାଦି ଯୁବନେତା ମଧ୍ୟ କାର୍ଯ୍ୟ କରୁଥିଲେ । ଅଗଷ୍ଟ ବିପ୍ଳବ ପୂର୍ବରୁ ରାଧା-କୃଷ୍ଣ ପଟିଆରୀ ଓ ମନମୋହନ ଚୌଧୁରୀ କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳ ବୁଲି ସତ୍ୟାଗ୍ରହୀ ବାଛୁଥିଲେ । ମୁଁ ଗୁଣୁପୁର ଅଞ୍ଚଳର ଗାଆଁ ଗଣ୍ଡାକୁ ବାରମ୍ବାର ଯାଇ ଲୋକଙ୍କ ମନରେ ସ୍ୱାଧୀନତା ଆସିବ ବୋଲି ବିଶ୍ୱାସ ଜନ୍ମାଏ । ମୋର ପ୍ରଚାର କାର୍ଯ୍ୟରେ ନାରାୟଣ ଗୁଡ଼ାର ଗୋବର୍ଦ୍ଧନ ଗମାଙ୍ଗ, ଜଂଗର ଗୁଡ଼ାର ବୈରାଗୀ କନ୍ଧ,

କାରଣୀ ଗୁଡ଼ାର ଯୋଗୁଁ ପାତ୍ରିକା ତୁମ୍ଭାକଣାର ମାଲମୁର ପତାକା ପ୍ରସ୍ତୁତ କ ଯ୍ୟରେ ଯାଆନ୍ତି । ବେଶୀ ଜଙ୍ଗଲ ପଡ଼ନ୍ତେ ଗୋଟିଏ ଗାଆଁ ର ମ୦୧°ଜଣ ଲୋକ ଅନ୍ୟ ଗାଆଁ ରେ ନେଇ ଗୁଡ଼ ଦଅନ୍ତି । ଗଣ୍ଡୁପୁରରେ ଖଦ୍ଦ ଭଣ୍ଡାର ଥାଏ । ସେଠାରେ ଅରଟ ମାର୍କା ପତାକା ତିଆରି ହୁଏ । ଲକ୍ଷ୍ମଣ ବୋଲି ଜଣେ କର୍ମୀ ଖଦ୍ଦଭଣ୍ଡାର ଦାୟିତ୍ୱରେ ଥାଆନ୍ତି । ଆମ୍ଭେ ସେ ରୁ ପତାକା ଆଣି ଗାଆଁ ରେ ବାଣ୍ଟୁ ଓ ବିକ୍ରୀକରୁ । କର୍ମୀ ହେବାର ଗୌରବରେ ମଧ୍ୟ କେତେ ଲୋକ ପତାକା କିଣନ୍ତି । ଜେଲଯିବା ଭଲ ବୋଲି ଲୋକଙ୍କୁ ବୁଝାଉ । ଜେଲରେ କିପରି ନିୟମିତ ଜୀବନ ଯାପନ କରିବାକୁ ହେବ ସେ ବିଷୟରେ ତାଲିମ ଦିଏ । ମୁଁ ଗଣ୍ଡୁପୁର ଯାଇଥିଲି ରଚନାତ୍ମକ କର୍ମୀ ଭାବେ । କିନ୍ତୁ କେଉଁ ପରିସ୍ଥିତିରେ ଆନ୍ଦୋଳନରେ ଯୋଗଦେବି ବୋଲି ସ୍ଥିର କଲି ତାହା ପୂର୍ବରୁ ବର୍ଣ୍ଣନା କରିଛି । ରଚନାତ୍ମକ କର୍ମର ଶୀଠସ୍ଥଳୀରୁ ରାଜନୈତିକ ଆନ୍ଦୋଳନର ପ୍ରସ୍ତୁତି ପୀଠ କରିବା ବ୍ୟକ୍ତିଗତ ମୋ ପାଇଁ ଅନ୍ୟଗତ୍ୟା ନଥିଲା ।

ହଠାତ୍ ଅଗଷ୍ଟ ବିପ୍ଳବ ଆରମ୍ଭ ହେଲା । ବିଶ୍ୱାସରାୟ ବମ୍ବେ କଂଗ୍ରେସ ଯାଇଥିଲେ । ସେଠାରୁ ଚିଠି ପଠାଇଥିଲେ । ତାଙ୍କ ହାତ ଲେଖା ଚିଠି ମୁଁ ପାଇଲି ୧୨ ତାରିଖ ବେଳକୁ । ସେତେବେଳକୁ ମୁଁ ଓ ମୋର ଆଦିବାସୀ ସହକର୍ମୀମାନେ ପ୍ରସ୍ତୁତ ହୋଇ ରହିଛୁ । ୧୩ ତାରିଖରେ ପାମ୍ପଲେଟ୍ ଲେଖାଗଲା । କାରବନ୍ ପେପର ପକାଇ ହାତରେ କିଛି ନକଲ କଲି । ମୋ ସହ ଲେଖି ଜାଣିବା କର୍ମୀ ମଧ୍ୟ କେତେଜଣ ନକଲ କଲେ । ପାମ୍ପଲେଟର ଶୀର୍ଷକ ଥିଲା ଗାନ୍ଧିଜୀଙ୍କର ବାଣୀ 'କର ବା ମର' । ବକ୍ତବ୍ୟ ବସ୍ତୁର ସାରାଂଶ "ଗାନ୍ଧୀ ଇତ୍ୟାଦି ଧରା ହୋଇ ଜେଲ ଚାଲିଗଲେ । ବର୍ତ୍ତମାନ ଆମର କେହି ନେତା ବୋଲି ବିଚାର କରି ସତ୍ୟ ଅହିଂସା ରାସ୍ତାରେ ସ୍ୱାଧୀନତା ପାଇଁ ଯାହା ପାରୁଛ ତାହା କର।"

ବିଶ୍ୱନାଥ ଏବେ ମଧ୍ୟ ଦୁଃଖିତ । ବୋଧେ ଆଦିବାସୀମାନଙ୍କଠାରୁ ସେ ଏ ଗୁଣ ହାସଲ କରିଛନ୍ତି । କିନ୍ତୁ ତାଙ୍କର ଏହି ପାମ୍ପଲେଟ୍‌ର ସାରାଂଶଟି ଆଦିବାସୀଙ୍କୁ ବହୁଦିନ ପାଇଁ ପ୍ରଭାବିତ କରିଥିଲା । ମଣିଷ ଉପରେ ବିଶେଷ କରି କୃତ୍ରିମ ପରିବେଶରୁ ଦୂରରେ ଥିବା ମଣିଷ ଉପରେ ହିଂସା ଓ ଅହିଂସାର ପ୍ରଭାବ ନେଇ ଶତାବ୍ଦୀ ଶତାବ୍ଦୀ ଧରି ମତ ପାର୍ଥକ୍ୟ ରହି ଆସିଛି । ବିଶ୍ୱନାଥ ଗାନ୍ଧୀଙ୍କୁ ସତ୍ୟ ଓ ଅହିଂସା ଏହି ଦୁଇଟି ବିଷୟରେ ସଂପୂର୍ଣ୍ଣ ସମର୍ଥନ କରୁଥିଲେ । ଏ ଦୁଇଟିର ସାମାନ୍ୟତମ ଖିଲାପ କରିବା ତାଙ୍କର ଭାବନା ମଧ୍ୟରେ ନଥିଲା । ଭାରତୀୟ ଆଦିମ ଜାତିର ଲୋକମାନଙ୍କ ମଧ୍ୟରେ ଯେଉଁ ବୈଦେଶିକ ସଂସ୍କାରକ ସମ୍ପାଦନ କାର୍ଯ୍ୟ-କରିଛନ୍ତି, ସେମାନଙ୍କ ମଧ୍ୟରୁ ବିଶ୍ୱନାଥଙ୍କର ଆଦିବାସୀ ମନ ଉପରେ ଶ୍ରେଷ୍ଠ ଗଭୀରତମ ବୋଲି ଯେ କେହି ସ୍ୱୀକାର କରିବେ । ବିଶ୍ୱନାଥ କିନ୍ତୁ ଏ ବିଷୟରେ ଅତି ନମ୍ରତା ପ୍ରକାଶ କରନ୍ତି । ତାଙ୍କର ବିଶ୍ୱାସ ଆଦିବାସୀମାନେ ସାଧାରଣତଃ ସତକଥା କହିବାକୁ ଭଲ ପାଆନ୍ତି । ଖାଦ୍ୟ ଆବଶ୍ୟକତା ବ୍ୟତୀତ ସେମାନେ ହିଂସାକୁ ପସନ୍ଦ କରନ୍ତି ନାହିଁ । ଯଦି ସେମାନେ ସ୍ୱଭାବତଃ ହିଂସ୍ର ହୋଇ-ଥାଆନ୍ତେ ! ବହୁ ଶୋଷଣକାରୀ ଗୋଷ୍ଠୀ ଓ ବ୍ରିଟିଶ୍ କର୍ମଚାରୀ ତଥା ରାଜକର୍ମଚାରୀ ତାଙ୍କ ଧନୁଶର ଓ ଟାଙ୍ଗିଆର ଶିକାର ହୋଇ-ଥାଆନ୍ତେ । ବିଶ୍ୱନାଥ ଜାଣିଥିଲେ, ତାଙ୍କର ଅନୁଗତମାନେ ସତ୍ୟ ଓ ଅହିଂସାରେ ବିଶ୍ୱାସରଖି କାର୍ଯ୍ୟ କରିପାରିବେ । ତେଣୁ ସେ ଉପରୋକ୍ତ ଆହ୍ୱାନ ଦେଇଥିଲେ ।

ମହାତ୍ମାଗାନ୍ଧୀଙ୍କର ନିର୍ଦ୍ଦେଶ ମୁତାବକ ବିଶ୍ୱନାଥଙ୍କର ଏହି ଆଜ୍ଞାପତ୍ର ଆଦିବାସୀମାନେ ନେଇ ଗାଆଁକୁ ଗାଆଁ ବୁଲିଲେ । କୋରାପୁଟ ଜଙ୍ଗଲରେ ଅଗଷ୍ଟମାସ କହିଲେ ବୁଝାଯାଏ, ଘନ ଘନ

ଲଗାଣ ବର୍ଷା, ପାହାଡ଼ିଆ ନଈରେ ପ୍ରବଳ ସୁଅ ପାଣି ଓ ଗଛଲତା ଭରିଯାଇଥିବା ଜଙ୍ଗଲ ।

ବିଶ୍ୱନାଥଙ୍କ ନେତୃତ୍ୱରେ କୁମ୍ଭେନ୍ଦ୍ରୀରୁ ଶୋଭାଯାତ୍ରା ବାହାରିଲା, ବ୍ରିଟିଶ୍ ସରକାର ଏ ଦେଶରୁ ହଟିଯିବା ପାଇଁ ଆହ୍ୱାନସହ । ଲକ୍ଷ୍ୟସ୍ଥଳ ୭ମାଇଲ ଦୂରର ଗୁଣୁପୁର । କୁମ୍ଭେନ୍ଦ୍ରୀର ୨୫୦ ଜଣ ପୁରୁଷ ଓ ସ୍ତ୍ରୀ ଲୋକ ଏହି ଶୋଭାଯାତ୍ରାରେ ଯାଇଥିଲେ । ପ୍ରାୟ ୫୦ ଜଣ ସ୍ତ୍ରୀ ଲୋକ ଓ ଦୁଇଶହ ଜଣ ପୁରୁଷଲୋକ । ବାଇରୁ ଗମାଙ୍ଗ ଝିଅ ସାଣ୍ଡି ବା ଆମ ଦ୍ୱାରା ପୁନର୍ନାମିତ ଶାନ୍ତି ସ୍ତ୍ରୀ ଲୋକମାନଙ୍କର ନେତୃତ୍ୱ ନେଇଥାଏ । ସେହି ମହିଳା ମାନଙ୍କୁ ବୁଝାଇ ଦିଆଯାଇ ଥାଏ ଯେ ସରକାର ଜେଲରେ ରଖିବ । ଗୁଣୁପୁର ଯିବା ରାସ୍ତାରେ ଲାଛପା ଗୁଲ୍ମୁଣ୍ଡା, ପଣସଗୁଡ଼ା ଓ ବ୍ରହ୍ମପୁର ଗାଆଁ ବାଟେ ଶୋଭାଯାତ୍ରା ଗଲା । ସେ ଗାଆଁରୁ ବି ଆଦିବାସୀ ଲୋକେ ବିଶ୍ୱନାଥଙ୍କ ସାଙ୍ଗରେ ବାହାରିଲେ । ସେ ସବୁ ଗାଆଁରେ ମଧ୍ୟ ବ୍ରିଟିଶ୍ ବିରୋଧି ଧ୍ୱନି ଦିଆଗଲା । ହାତରେ ତ୍ରିରଙ୍ଗ ପତାକା ଧରି ସେମାନେ ବିଶ୍ୱନାଥଙ୍କ ପଛରେ ଚାଲିଥାଆନ୍ତି । ଘରୁ ସେମାନେ ବିଦାୟ ନେଇ ଜେଲ୍ ଯିବା ପାଇଁ ପ୍ରସ୍ତୁତ ହୋଇ ଆସିଥାଆନ୍ତି ।

ବ୍ରହ୍ମପୁର ଗାଆଁ ଶେଷରେ ବଂଶଧାରା ନଦୀ, ସେତେବେଳେ ନଦୀରେ ପ୍ରବଳ ବନ୍ୟା । ଡଙ୍ଗାବାଲା ଏହି ଶୋଭାଯାତ୍ରାକାରୀ ମାନଙ୍କୁ ନଦୀ ପାର କରିଦେବାକୁ ମନାକଲା । ବ୍ରହ୍ମପୁରରେ ଲୋକେ କିଛି ସମୟ ଅପେକ୍ଷା କରି ଭୀଷଣ ବିରକ୍ତି ପ୍ରକାଶକରିବାରୁ ଡଙ୍ଗାବାଲା ଡରି ଡରି ନଦୀପାର କଲା । ସମସ୍ତେ ଗୁଣୁପୁର ଗଲେ । ସେଠାରେ ଥାନା, ତହସିଲ ଅଫିସ ଓ ମୁନସଫ୍ କୋର୍ଟ୍ । ଗୁଣୁପୁରର ଲୋକେ ଏହି ଶୋଭାଯାତ୍ରା ଆସିବା ଖବର ଆଗରୁ

ପାଇଥିଲେ । ସେଠାରେ ଚନ୍ଦ୍ରାଞ୍ଚଳ ବେଳକୁ ପ୍ରାୟ ଦେଢହଜାର ଲୋକେ ଶୋଭାଯାତ୍ରାରେ ଯୋଗଦେଲେ । କୃଷ୍ଣଚନ୍ଦ୍ର ବକ୍ସିପାତ୍ରଙ୍କ ନେତୃତ୍ୱରେ ହାଇସ୍କୁଲ ପିଲମାନେ ମଧ୍ୟ ଶୋଭାଯାତ୍ରାରେ ଯୋଗଦେଲେ ।

ପୋଲିସର ପ୍ରତିନିଧି ହଠାତ୍ ଜଣାପଡ଼ିଲା ନାହିଁ । ବୋଧେ ପୋଲିସ୍ ସଂଖ୍ୟା କମ୍ ଥିଲା । ତେଣୁ ହଠାତ୍ ଗିରଫଦାରୀ ହେଲନାହିଁ । ପୋଲିସ୍ ଡ଼ାକନେଇ ଲୋକଙ୍କୁ ଥାନାପାଖରେ ବସାଇଲେ, ୨।୩ ଘଣ୍ଟାପରେ ଛାଡ଼ିଦେଲେ । କିନ୍ତୁ ଲୋକେ ଫେରି-ଯିବାକୁ ନାରାଜ । ସେମାନେ ତ ଜେଲ୍ ଯିବାକୁ ଆସିଛନ୍ତି । ପୋଲିସ୍ ଶେଷରେ ଘଉଡ଼ାଇଦେବାରୁ ଲୋକେ ଯାଇ ଏହା ଘର ତାହା ପିଣ୍ଡା ଏକ୍ତିଆରେ ହେଲେ । ରାତିରେ ଗୁଣ୍ଡୁପୁରର ସ୍ଥାନୀୟ ଲୋକେ ପଦାଗାଆଁର ଲୋକଙ୍କୁ ନିମନ୍ତ୍ରଣ କରି ଖାଇବା ପିଇବାକୁ ଦେଲେ । ତା' ପରଦିନ ପୁଣି ଶୋଭାଯାତ୍ରା ବାହାରି ଗାଆଁ ବୁଲିଲା । ତଥାପି ପୋଲିସ୍ ଗିରଫ୍ ନ କରିବାରୁ ଲୋକେ ବାମୁଣୀ ହାଟକୁ ପ୍ରଚାର କରିବାକୁ ଗଲେ । ସେଠାରେ ସଭା ହେଲା ଓ ଶୋଭାଯାତ୍ରା ଗଲା । କିନ୍ତୁ ବିଶ୍ୱନାଥ ଓ ଅନ୍ୟ ୫୦ । ୬୦ ଜଣ ଲୋକ ଖିଲା ପଦର, ତମ୍ପସର ଓ ପାଖ ଆଖ ଗାଆଁକୁ ବାର୍ତ୍ତା ପ୍ରଚାର କରିବାକୁ ଗଲେ । ସେ ସବୁ ଗାଆଁର ଅଧିକାଂଶ ଲୋକ ସରକାରଙ୍କ ଉପରେ ଆନ୍ଦୋଳନକାରୀମାନଙ୍କୁ ଖାଇବାକୁ ଦେଲେନାହିଁ । ଘର ଭିତରେ ରହିବାକୁ ସ୍ଥାନ ଦେଲେନାହିଁ ।

ବିଶ୍ୱନାଥ ଓ ତାଙ୍କର ସହକର୍ମୀମାନେ ଏକଚୋଟି ମାଟିହାଣ୍ଡି ନେଇ ଘରଘର ବୁଲି ପେଜ ମାଗି ଯାଆନ୍ତି । ପେଜର ଅର୍ଥ ମାଣ୍ଡିଆ ବା ଜଙ୍ଗଲର ଜାଉ । ଲୋକେ ସନ୍ୟାସୀ ମାନଙ୍କୁ ଯେପରି ଭିକ୍ଷା

ଦିଅନ୍ତି, ଏହି ଆନ୍ଦୋଳନକାରୀ ମାନଙ୍କୁ ସେହିଠାରେ ଦେଇ ଭିକ୍ଷା ଦିଅନ୍ତି । ସେ ପେଜ ଗାଆଁ ମୁଣ୍ଡରେ ପଡ଼େ । ୫୦।୬୦ ଲୋକ ମିଳିଥିବା ଖାଦ୍ୟକୁ ସମାନ ବାଂଟି ଏକ ଠୋଲିରେ ଖାଇ ଦିଅନ୍ତି । ୪।୫ ଦିନ ଏହିପରି ବୁଲିବା ପରେ ମଧ୍ୟ ଗିରଫ ନ ହେବାରୁ ସେମାନେ ଭାବିଲେ ସରକାର ଏମାନଙ୍କୁ ଖାତିର କରୁନାହିଁ । ତେଣୁ ସେମାନେ କୁଜେନ୍ଦ୍ରୀ ଫେରିଲେ । କୁଜେନ୍ଦ୍ରୀରେ ପହଞ୍ଚିବାର କେତେ ଘଣ୍ଟା ପରେ ସନ୍ଧ୍ୟାବେଳକୁ ପୋଲିସ ଆସି ପହଞ୍ଚିଲେ ଓ ପ୍ରଥମେ ବିଶ୍ୱନାଥଙ୍କୁ ଉଠାଇ ପଠାଇଲେ । ତା'ପରେ ନୀଳକଣ୍ଠ ଗମାଙ୍ଗ ଓ ତା'ର ବାପା ବାଇରୁ ଗମାଙ୍ଗ ଏବଂ ଅନ୍ୟ କେତେ ଲୋକଙ୍କୁ ନେଇ ଗୁଣୁପୁର ଗଲେ । ସମସ୍ତଙ୍କୁ ଥାନାରେ ଅଟକ ରଖାଗଲା । ୨।୩ ଦିନ ପରେ ବିଚାର ହୋଇ ୬ମାସ ଲେଖାଏଁ ଜେଲ୍ ଆଦେଶ ହେଲା । ରାୟଗଡ଼ାର Sub-Agent ବା ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ୍ ବିଶ୍ୱନାଥଙ୍କୁ ଦ୍ୱିତୀୟ ଶ୍ରେଣୀ ବନ୍ଦୀ ରୂପେ ସୁବିଧା ଦେଲେ ।

ତା'ପରେ କୁଜେନ୍ଦ୍ରୀ ଗାଆଁର ୧୮ଜଣ ସ୍ତ୍ରୀ ଲୋକଙ୍କୁ ଗିରଫ କରାଗଲା । କୁଜେନ୍ଦ୍ରୀ, ନାରାୟଣଗୁଡ଼ା ଓ ଗୁଲୁମୁଣ୍ଡା ଗାଆଁରୁ ୧୨ ଜଣ ପୁରୁଷ ଲୋକଙ୍କୁ ମଧ୍ୟ ଗିରଫ କରାଗଲା । ସେତେବେଳେ ଜଣାଗଲା ଯେ ବିଶ୍ୱନାଥଙ୍କ କାର୍ଯ୍ୟ କଳାପ ପାଖ ଆଖ ଅଞ୍ଚଳରେ ଆଦିବାସୀଙ୍କୁ ଗଭୀର ଭାବେ ପ୍ରଭାବିତ କରିଛି ।

ବିଶ୍ୱନାଥଙ୍କ କେଶ୍ ବିଚାର ହେବା ବେଳକୁ ସେ ଗୁଣୁପୁର ସବ୍‌ଜେଲ୍‌ରେ ଥିଲେ । ଜେଲ ଭୋଗିବାକୁ ଆଦେଶ ବାହାରିବା ପରେ ତାଙ୍କୁ କୋରାପୁଟ ପଠାଗଲା । ହାତକଡ଼ି ପକାଇ ତାଙ୍କୁ ଓ ତାଙ୍କର ସହକର୍ମୀମାନଙ୍କୁ ହଳହଳ କରି ବାନ୍ଧି ନେଲେ ବସ୍‌ରେ ରାୟଗଡ଼ା ଯାଏ । ସେଇଠି ସେମାନେ ରାତିଟିଏ କଟାଇ ଟ୍ରେନରେ

ବୁଝାଦେଲେ କୋରାପୁଟ । ପୋଲିସ ସେମାନଙ୍କୁ କୋରାପୁଟ ଥାନା କାରଣ୍ଡାରେ ବସାଇଦେଲେ ସନ୍ଧ୍ୟାରୁ ସକାଳଯାଏ, ହାତକଡ଼ା ଫିଟାଗଲା ନାହିଁ, ଝାଡ଼ା ପରିସ୍ରା ଯିବାପାଇଁ ମଧ୍ୟ ହାତକଡ଼ା ଫିଟା-ଗଲା ନାହିଁ । ସେ ରାତି ଚାଲିଲା, ସେମାନେ କୋରାପୁଟ୍ ଜେଲ୍‌କୁ ନିଆଗଲେ ।

ବିଶ୍ୱନାଥ ଜେଲରେ କୋରାପୁଟର ବହୁତ ଅଞ୍ଚଳର ଲୋକଙ୍କୁ ଭେଟିଲେ । ସେଠାରେ ପ୍ରାୟ ୭୦୦ ସ୍ୱାଧୀନତା ଆନ୍ଦୋ-ଳନରେ ଭାଗ ନେଇଥିବା ଲୋକ ଥିଲେ । ନବରଙ୍ଗପୁର, ବୈପାରି-ଗୁଡ଼ା, ଜୟପୁର ଓ ନନ୍ଦପୁର ଅଞ୍ଚଳରେ ଲୋକବେଶୀ, ଗୁଣୁ-ପୁରର ଲୋକ କମ୍ । ଯେଉଁମାନେ ୬ମାସରୁ କମ୍ ସଜା ପାଇ ଥାଆନ୍ତି ସେମାନେ ସ୍ଥାନୀୟ ସବ୍ ଜେଲରେ ରହନ୍ତି । ତା ଛଡ଼ା ଗୁଣୁପୁରର କର୍ମୀମାନେ ବରମ୍ପୁରରେ ବେଶୀଦିନ ରହିଲେ । କୋରା-ପୁଟ ଜେଲରେ ଯେଉଁମାନେ ବିଶ୍ୱନାଥଙ୍କ ସହ ପରିଚିତ ହେଲେ ସେମାନଙ୍କମଧ୍ୟରୁ ଲକ୍ଷ୍ମଣ ନାୟକଙ୍କ ପରାମର୍ଶଦାତା ବନ୍ଧୁ ମାଳକଣ୍ଠ ପାତ୍ର ନନ୍ଦ ପରିବାରର ଝୁଲନ ଓ ଭଗବାନ ଖେମୁଣ୍ଡୁ ଇତ୍ୟାଦି ପ୍ରଧାନ । ଜେଲରେ କିଛିଦିନ ସମସ୍ତେ ଏକାଠି ରହିବାପରେ ବିଶ୍ୱନାଥଙ୍କୁ ଏକ ୩ଜଣିଆ ସେଲ୍‌କୁ ସ୍ଥାନାନ୍ତର କରାଗଲା । ସରକାର କ'ଣ ନିର୍ଦ୍ଦେଶ ଦେଲେ କେଜାଣି, ଆଠଦିନ କିଛିଦିନ ପରେ ସେହି ୩ଜଣିଆ ସେଲ ମଝିରେ ଇଟା ପାଚେରୀ ଦିଆଯାଇ ଛୋଟ ଛୋଟ କରି ଦିଆଗଲା ଓ ପ୍ରତ୍ୟେକ ସେଲରେ ଜଣେ ଜଣେ ବନ୍ଦୀ ରହିଲେ । ୬ମାସ ଜେଲରେ କାଟି ବିଶ୍ୱନାଥ କୁଜେନ୍ଦ୍ରୀ ଫେରିଲେ ।

ଲୋକଙ୍କ ସ୍ୱର୍ଗକୁ ଗଲେ ଧାନ କୁଟେ । କୁଜେନ୍ଦ୍ରୀରେ ସେ ସ୍ଥିର ହୋଇ ରହିପାରିଲେ ନାହିଁ । ମହାତ୍ମା ଗାନ୍ଧୀ ଓ ସବୁ ବଡ଼

ନେତା ଜେଲରେ ଅଛନ୍ତି । ସେଥିରେ ପ୍ରତି ଦଳେ ସମସ୍ୟା ଖୋଜି ତା'ର ସମାଧାନ କରିବାକୁ ହେବ । କୋରାପୁଟର ସମସ୍ୟା ଖୋଜି-ବାକୁ ହୁଏନା । ଜଣେ ସମାଜସେବୀ ସମସ୍ୟା ଭିତରେ ବୁଡ଼ି ବୁଡ଼ି ରହିଥାଏ । ସାହୁକାର ମାନଙ୍କ ଶୋଷଣ ବିରୁଦ୍ଧରେ ପ୍ରତି ଆନ୍ଦୋ-ଳନ ଆରମ୍ଭ ହେଲା । ବିଶ୍ୱନାଥ ସେ ସମ୍ପର୍କରେ କହନ୍ତି "ସେ ଅଞ୍ଚଳର ଗଲୁଣ୍ଡି ବୋଲି ଗ୍ରାମରେ ପୋଲିସ୍ ଫାଣ୍ଡିଟିଏ ଥିଲା । ସେହି ଗ୍ରାମରେ ରାମଚନ୍ଦ୍ର ସାହୁ ଜଣେ ମହାଜନ । ଫାଣ୍ଡିରେ ପୋଲିସ୍ ମାନଙ୍କ ପରୋକ୍ଷ ସମର୍ଥନରେ ସେ ଆଦିବାସୀ ମାନଙ୍କୁ ଶୋଷଣ କରି ଲାଗିଥାଏ । ଲୋକେ କହନ୍ତି, ଋଣ ଦେଉଛ ଅତି ଭଲ କଥା, କିନ୍ତୁ ଅତ୍ୟଧିକ ସୁଧ ନିଅନାହିଁ, ମୂଲିଆ ଲଗାଇଲେ ଅଧିକ ମଜୁରି ଦିଅ । ଏ ଦାବୀ ଥିଲା ସାଧାରଣ ଆଦିବାସୀ କର୍ମୀ ପଦାକା ମନାମ୍ବର ଦୋରା, କାଞ୍ଚାନା ସୋମ୍ବୁଲୁ, ପାତ୍ରିକା ଯୋଗିଲୁ ଓ ଲଛାନା ଇତ୍ୟାଦିଙ୍କର । ସେହି କର୍ମୀ ମାନଙ୍କୁ ନୈତିକ ସମର୍ଥନ ଦେବା ମୋର କର୍ତ୍ତବ୍ୟ ବୋଲି ବିଚାରିଲି । ସମାପ ଚଳେ ଗରିବ-ଗୁଡ଼ି ଆନ୍ଦୋଳନ ପାଇଁ ଯେପରି ପ୍ରଚୁର ପତ୍ର ବଣ୍ଟା ଯାଇଥିଲା ସେହି-ପରି ଆଜି ଥରେ ପ୍ରଚୁର ପତ୍ର ବଣ୍ଟା ହେଲା । ସେଥିରେ ଲେଖାଥିଲା "ଅତ୍ୟାଗ୍ରହୀ ମାନଙ୍କର ସମ୍ପତ୍ତି ଲୋକମାନେ ବାଜ୍ୟାପ୍ତ କରି ଦିଅନ୍ତୁ, ସେ ସମ୍ପତ୍ତି ସମୁଦାୟ ସମାଜର, ସାହୁକାର ମାନେ ସମାଜର ଅଧିକାଂଶ ଲୋକଙ୍କୁ ଠକି ନିଜର ସଂପତ୍ତି ଠୁଳ କରିଥିବାରୁ ସେ ସଂପତ୍ତି ସମାଜକୁ ଫେରି ଆସିବା ଉଚିତ । ଯଦି ସରକାର ଆମକୁ ସମର୍ଥନ କରିବେ ନାହିଁ, ତେବେ ଆମେ ସରକାରଙ୍କୁ ବିରୋଧ କରିବୁ ।" ଏ ପ୍ରକାର ପତ୍ର ରାମଚନ୍ଦ୍ର ସାହୁ ବା ଅନ୍ୟ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ବିରୁଦ୍ଧରେ ବଣ୍ଟା ଯାଇ ନ ଥିଲା । ସମୁଦାୟ ଶୋଷକ ଗୋଷ୍ଠୀ ବିରୁଦ୍ଧରେ ଜନମତ ସୃଷ୍ଟି କରିବା ଓ ଜନ ସାଧାରଣଙ୍କ ବିଦ୍ରୋହକୁ ଏକ ସଂଗଠିତ ରୂପ ଦେବା ମୋର କାମ ଥିଲା ।

ରାମଚନ୍ଦ୍ର ସାହୁ ବଡ଼ ଚତୁର ଲୋକ, ପୋଲିସ୍ ପରାମର୍ଶରେ ସେ କର୍ମୀମାନଙ୍କ ବିରୁଦ୍ଧରେ କେସ ଦେବା ପାଇଁ ପ୍ରସ୍ତୁତ ହୋଇ ରହିଲେ । କେତୁଦିନ ମଧ୍ୟରେ କର୍ମୀମାନେ ମୋ ସହ ଏହି ସଂପତ୍ତି ବ୍ୟାଜାପ୍ତି କରଣ କାର୍ଯ୍ୟକ୍ରମ ସଂପର୍କରେ ଆଲୋଚନା କରିବାକୁ ଆସିଲେ । ଜେଲରୁ ଫେରି ଆସିବା ପରେ କୁଜେଙ୍ଗୀ ଗାଁରେ ଲୋକେ ମୋ ପାଇଁ ଏକ ସ୍ୱତନ୍ତ୍ର କୁଡ଼ିଆ ଘରର ବ୍ୟବସ୍ଥା କରି ଦେଲେ । ସେତକା ଶବର କୁଡ଼ିଆ ଘରଟିଏ ନିଜ ଇଚ୍ଛାରେ ଛାଡ଼ି ଦେଇଥାଏ । ସେଥିପାଇଁ ସେ କିଛି ଭଡ଼ା ନିଏ ନାହିଁ । ସେହିଠାରେ ମୁଁ ଆଶ୍ରମ କରିଥାଏ । ମୋର ପରାମର୍ଶ ଅନୁସାରୀ ସମ୍ପୂର୍ଣ୍ଣ ଅହିଂସ ଉପାୟରେ ରାମଚନ୍ଦ୍ର ସାହୁଙ୍କର ଅଳ୍ପ କେତେବସ୍ତା ଧାନ ଜବତ କରି ନିଆଯାଇଥିଲା । ସର୍ବସାଧାରଣଙ୍କ ଉପସ୍ଥିତିରେ ଦିନରେ ମନାମ୍ବର ଇତ୍ୟାଦି ଏହି ଧାନ ରାମଚନ୍ଦ୍ର ସାହୁଙ୍କ ଘରୁ ନେଇ ଆସିଲେ । ସାହୁଙ୍କ ଆଦିବାସୀ ଗୋଣ୍ଡମାନେ ବାଧା ଦେଲେ ନାହିଁ ଏବଂ ସାହୁ ମଧ୍ୟ ଲୋକଙ୍କ ଉପରେ ହଠାତ୍ କିଛି କହିଲେ ନାହିଁ ।

କେତେ ଘଣ୍ଟା ପରେ ସାହୁ ପୋଲିସ୍ ଫାଣ୍ଡିର ପରାମର୍ଶରେ ମନାମ୍ବର ଇତ୍ୟାଦିଙ୍କ ନାମରେ ଡକାୟତି ଅଭିଯୋଗ କଲେ । ମୋତେ ପ୍ରତ୍ୟକ୍ଷଭାବେ କେଶ୍‌ରେ ସଂପୃକ୍ତ କଲେ କାଳେ ତାହା ରାଜନୈତିକ ରୂପନେବ ତେଣୁ ମୋତେ ଯୋଡ଼ାଗଲା ନାହିଁ । ପୋଲିସ୍ ତ ସାହୁକାର ମାନଙ୍କ ସମର୍ଥକ ଓ ବନ୍ଧୁ, ଅଧିକନ୍ତୁ ମହାମାନ୍ୟ ବ୍ରିଟିଶ୍ ସରକାରଙ୍କ ଶତ୍ରୁ ଏହି କର୍ମୀ ଗୁଡ଼ାକ ଡକାୟତି କରିଛନ୍ତି, ତେଣୁ ତାଙ୍କୁ ଜବତ୍ କରିବାକୁ ହେବ । ପୋଲିସ୍ ସେମାନଙ୍କୁ ଧରିନେଲା ଓ ମୋ ଘର ଖାନତଲାସ କଲା । ମୋ ଘରୁ ପ୍ରଚୁର ପତ୍ର ମିଳିଲା । ପୋଲିସ୍ ଜେରାରେ ମୁଁ ସ୍ୱୀକାର କଲି ଯେ ମୁଁ ସେହି ପତ୍ର ଗୁଡ଼ିକ ଲେଖିଛି ଓ ବାଣ୍ଟିଛି । ମୁଁ ଲୋକଙ୍କୁ ଭେଟି ଭେଟି

ବିରୁଦ୍ଧରେ କହୁଥିଲି । ପୋଲିସ୍ ମୋତେ ଗିରଫ କରି ଗୁଣୁପୁର ନେଇଗଲେ । କିନ୍ତୁ କେଉଁ କାରଣରୁ ଗିରଫ କଲେ କହିଲେ ନାହିଁ । ରାୟଗଡ଼ାରୁ ସବ୍-ଏଜେଣ୍ଟ ଯାଇ ବିଚାର କଲେ ଓ ତୃତୀୟ ଶ୍ରେଣୀ ବନ୍ଦୀ ଭାବେ ୬ମାସ ଧଜା ଦିଆଗଲା । କୋରାପୁଟ ଜେଲକୁ ନିଆଗଲି । ଆମକୁ ମାତ୍ର ସଶ୍ରମ କାରାଦଣ୍ଡ । ମାଣ୍ଡିଆ ରୁଟି ଓ ଡାଲି ଖାଇବାକୁ ଦିଆଗଲା । ସେଲ୍‌ରେ ରଖାଗଲା । ସାଧାରଣ କଏଦୀ ମାନଙ୍କ ସହ ଆମକୁ ମିଶିବାକୁ ଦିଆଯାଏ ନାହିଁ, କାରଣ ସରକାରଙ୍କ ବିଚାର ଥାଏ ଯେ ଆମେ ସେମାନଙ୍କୁ କୁବୁଦ୍ଧି ଦେବୁ, ସ୍ୱାଧୀନତା ସଂପର୍କରେ କହିବୁ । ତେଣୁ ଆମକୁ ଏକୁଟିଆ ରଖାଯାଏ ଓ କାମ ଦିଆଯାଏ ନାହିଁ ।

ମୁଁ ଜେଲରେ ଥିବା ସମୟରେ ମାଲାମ୍ବର ଓ ଅନ୍ୟମାନେ ଧାନ ଲୁଟ କେସ୍‌ରେ ଦେଢ଼ବର୍ଷ ଲେଖାଏଁ ସଜାପାଇ କୋରାପୁଟ ଜେଲରେ ପହଞ୍ଚିଲେ । ସେଲ୍‌ରୁ ଗାଧୋଇବାକୁ ଗଲାବେଳେ ସେମାନଙ୍କ ସାଥିରେ କଥାବାର୍ତ୍ତା ହୁଏ । ସେମାନଙ୍କୁ ଦମ୍ଭ ଦିଏ ।

ଲକ୍ଷ୍ମଣ ନାଏକ ସେହି ସମୟରେ ଜେଲ୍‌ରେ ଥାଆନ୍ତି । ତାଙ୍କର ବିଚାର ଚାଲିଥାଏ । ଆମେ ତାଙ୍କୁ ମଝିରେ ମଝିରେ ଭେଟୁ । ତାଙ୍କୁ ଜଗିବା ଦାୟିତ୍ୱ ଥାଏ ରାମଚନ୍ଦ୍ର ହାବଲଦାରର । ଲକ୍ଷ୍ମଣ ଜେଲ୍‌ରେ ଭାଗବତ ଓ ଅନ୍ୟାନ୍ୟ ଧର୍ମ ପୁସ୍ତକ ପଢୁଥାଆନ୍ତି । ମୋର ସେହି ଜେଲ୍ ରହଣୀ ଭିତରେ ତାଙ୍କୁ ଫାଶୀ ଆଦେଶ ମିଳିଲା । ସେ ଅର୍ଡ଼ର ଜାଣିଲା ପରଦିନ ନବରଙ୍ଗପୁର ମହାନ୍ତଦ ବାଗ ଓ ମୁଁ ରାମଚନ୍ଦ୍ର ହାବଲଦାରକୁ କୁହାବୋଲା କରି ଲକ୍ଷ୍ମଣଙ୍କ ସେଲକୁ ଦେଖା କରିବାକୁ ଗଲୁ । ସେ କଥାବାର୍ତ୍ତା ମଝିରେ କହିଲେ "ସ୍ୱରାଜ ଦେଖିପାରିଲି ନାହିଁ, ଆଜ୍ଞା ।" ସେ ଟିକିଏ ଦବି ଯାଇଥିଲେ

କିନ୍ତୁ ଭଗବତ୍ ବିଶ୍ୱାସ ଦୃଢ଼ ଥିବାରୁ ବିଶେଷ ପ୍ରତିକ୍ରିୟା ପ୍ରକାଶିତ ହେଉନଥିଲା । ନିଜ ଘରର ଅବସ୍ଥା କ'ଣ ହୋଇଯିବ, ସ୍ତ୍ରୀପିଲା ଅନାଥ ହୋଇଯିବେ, ଏସବୁ କଥା ସେ କେବେ ଆମ ଆଗରେ ପ୍ରକାଶ କରି ନାହାନ୍ତି, ମୋର ଯେତେଦୂର ଅନୁମାନ, ସେତେ-ବେଳେ ମଧ୍ୟ ସେ ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ରହିଥିଲେ ।

ମାତଲ ଥାନାରେ ଯେଉଁମାନେ ବିକ୍ଷୋଭ ପ୍ରଦର୍ଶନ କରୁଥିବା ସମୟରେ ସରକାରୀ କର୍ମଚାରୀଙ୍କୁ ହତ୍ୟା ଅଭିଯୋଗରେ ଲକ୍ଷ୍ମଣ ନାଏକଙ୍କ ସହ ଗିରଫ ହୋଇଥିଲେ ସେମାନଙ୍କ ମଧ୍ୟରୁ ପ୍ରାୟ ଅଧି-କାଂଶ ଆଜୀବନ କାରାଦଣ୍ଡ ଆଦେଶ ପାଇଲେ । ବିଚାର ଶେଷ ହେବା ପରେ ପରେ ସେମାନଙ୍କୁ ଏକ ଅଦ୍ଭୁତ ଦଣ୍ଡଦିଆଗଲା, ସେମାନଙ୍କ ଦୁଇଗୋଡ଼ରେ ଲୁହାବଳା ପିନ୍ଧାଇ ଦିଆଗଲା ଓ ସେହି ବଳା ଦୁଇଟିକୁ ଯୋଡ଼ି ଗୋଟିଏ ଦେଢ଼ଫୁଟ ଲମ୍ବର ଲୁହାରଡ୍ ଲଗାଇ ଦିଆଗଲା । ସେହି ଦୁଇଗୋଡ଼ର ବଳାରୁ ପୁଣି ୨ଟି ଲୁହା-ରଡ୍ ପ୍ରାୟ ୨ଫୁଟ ଲମ୍ବର ବାହାରିଥିବ । ସେହି ରଡ୍ ଦୁଇଟିର ଅପର ପାର୍ଶ୍ୱ ମୁଦିପରି ହୋଇଥିବ । ବନ୍ଦୀ ତାକୁ ହୁଏତ ହାତରେ ଧରି ଚାଲିବ, ନଚେତ୍ ତା ଭିତରେ ଗାମୁଛାକୁ ଦଉଡ଼ି ପରି ଗଳାଇ ଅଣ୍ଟାରେ ବାନ୍ଧିବ । ଯଦି ଲୁହାଛଡ଼ ଦୁଇଟିକୁ ଏପରି ଧରି ନଯାଏ ତେବେ ତାହା ଗୋଡ଼ ପାଖରେ ପଡ଼ି ରହିବ, ଯା'ଫଳରେ ଚାଲିବା ସମ୍ଭବ ହେବନାହିଁ । ଏହାକୁ ଦଣ୍ଡାବେଡ଼ି କୁହାଯାଉଥିଲା । ମୁଁ ଜାଣିନାହିଁ, ମହାମାନ୍ୟ ବ୍ରିଟିଶ ସରକାର ତାଙ୍କର ଅନୁଗତ ରାଜ-କର୍ମଚାରୀ ମାନଙ୍କୁ ଏପରି ଦଣ୍ଡ ଦେବାପାଇଁ ନିର୍ଦ୍ଦେଶ ଦେଇଥିଲେ କି ନାହିଁ ଓ ଭାରତର ଅନ୍ୟତ୍ର ଏପରି ଦଣ୍ଡର ବ୍ୟବସ୍ଥା ଥିଲା କି ନାହିଁ । କିନ୍ତୁ ଏହା ଏକ ଅତ୍ୟାଚାର ବୋଲି ମୁଁ ଅନୁଭବ କଲି । ସେହି ଦଣ୍ଡବେଡ଼ି ପିନ୍ଧି କଏଦୀ ମାନଙ୍କୁ ମୁର୍ଗା ଗଛର ପଥ ଛେଚି ଖୋଟ

ବାହାର କରିବାକୁ ପଡ଼େ । ସେମାନଙ୍କ ଦେହରେ ମୁରୁଗାପତର ରସ ଛୁଡ଼ିକ ଆସି ପଡେ ଓ ଯେଉଁ ଯାଗାରେ ସେ ରସ ପଡେ ସେହି ଜାଗାରେ କୁଣ୍ଡାଇ ହୋଇ ଶିର ଶିର ଫୁଲିଯାଏ । କୋରାପୁଟିଆ କଏଦୀ, ସେ ମନେ ମନେ ଧରି ନେଇ ଯାଇଥାଏ ଯେ ଦେଶର ସ୍ୱାଧୀନତା ପାଇଁ ଏସବୁ କଷ୍ଟ ସହିବାକୁ ପଡେ ।

ଜେଲ୍‌ରେ ଯେତିକ ବନ୍ଦୀଙ୍କ ପାଇଁ ବ୍ୟବସ୍ଥା ଥିଲି ତା'ଠାରୁ ବହୁ ଅଧିକ ସଂଖ୍ୟକ ରାଜନୈତିକ ବନ୍ଦୀଥିଲେ । ଗୋରୁ ଗହ୍ୱାଳ-ପରି ଲମ୍ବା ସେଡ୍ ମାନଙ୍କରେ ଗଦାଗଦା କଏଦୀ ଭର୍ତ୍ତି ହେଉଥିଲେ । ଅସ୍ୱାସ୍ଥ୍ୟକର ପରିବେଶ, ଶୋଇବାର ସୁବିଧା ନାହିଁ, ଖାଇବା ପାଇଁ ଘାଠ ପଞ୍ଝାଏ ଓ ଡ଼ାଲି ଟିକିଏ, ନଚେତ ମାଂଡ଼ିଆ ରୋଟି ଓ ଡ଼ାଲି ରୋଗ ହେଲେ ଚିକିତ୍ସାର ମଧ୍ୟ ଭଲ ବ୍ୟବସ୍ଥା ନଥିଲି । ସେମାନଙ୍କ ପାଇ ଭଲ ଖାଦ୍ୟ ଦିଅ, ତାଙ୍କୁ ଅଧିକ ସୁବିଧାଦିଅ ଏହି ଦାବୀରେ ମୋର ସମସ୍ତ କଟେ । ତେଣୁ ମୋର ଶିକ୍ଷାଗତ ବିକାଶ ହେବାର ସୁଯୋଗ ହେଲି ନାହିଁ ।

ଚିକିତ୍ସା ଅଭାବରୁ ଜେଲ୍‌ରେ ଅନେକ ବନ୍ଦୀ ମରିଗଲେ । ସେମାନଙ୍କର ଏକ ନାମ ତାଲିକା ମୁଁ ସଂଗ୍ରହ କଲି ଓ ତାହା ଜ୍ଞାନ ମଣ୍ଡଳର ସଂପାଦକ ବିନୋଦ କାନୁନ୍‌ଗୋଙ୍କୁ ଦେଇଥିଲି । ସମସ୍ତଙ୍କ ନାମ ଏବେ ମନେରଖି ପାରିନାହିଁ, ଯେତିକ ମନେଅଛି ତାହା ନିମ୍ନରେ ଦିଆଗଲା—

## ୧୯୪୨ ଅଗଷ୍ଟ ଆନ୍ଦୋଳନରେ ଜୀବନ ଦେଇଥିବା କୋରାପୁଟ ଜିଲ୍ଲାର ବୀର ଶହୀଦ ଗଣ

| କ୍ରମିକ | ଶହୀଦଙ୍କ ନାମ | ଗ୍ରାମ | ଥାନା | ଶହୀଦ ପୀଠ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|---|
| ୧ | ଲକ୍ଷ୍ମଣ ନାଇକ | ତେଣ୍ଟୁଲି ଗୁମା | ମାଥିଲି | ବ୍ରହ୍ମପୁର ଜେଲ୍‌ରେ | ଶତ୍ରୁର ଫାଶିରେ |
| ୨ | ସମରାବଶି ନାଇକ | ମିଞ୍ଜାରଗୁଡ଼ା | ,, | ମାଥିଲି ଥାନାରେ | ଶତ୍ରୁର ଗୁଳିରେ |
| ୩ | ନରସିଂ ଡମ୍ବ | ନୂଆଗୁଡ଼ା | ,, | ,, | ,, |
| ୪ | ଅର୍ଜୁନ କୁଟିଆ | କୁଡ଼କଗୁଡ଼ା | ,, | ,, | ,, |
| ୫ | ଲିଙ୍ଗ କୁଟିଆ | ଟିମସପୁଟ | ,, | ,, | ,, |
| ୬ | ଖଗପତି ଅମାନାଚ୍ୟ | କଙ୍ଗ୍ରା | ନବରଙ୍ଗପୁର | ପାପଡ଼ାହାଣ୍ଡି | ନଘାଟରେ ,, |
| ୭ | ସୁଦୁ ଭତରା | ନନ୍ଦାହାଣ୍ଡି | ,, | ,, | ,, |
| ୮ | ଆନନ୍ଦ ଗୌଡ | ଦୁଗୁଗୁଡ଼ା | ,, | ,, | ,, |
| ୯ | ବଲି ସଉରା | ଚନ୍ଦା | ଡେଣ୍ଟୁଲିଖୁଣ୍ଟି | ,, | ,, |
| ୧୦ | ବୁଦୁ ଅମାନାଚ୍ୟ | ଉସୁରିପଦର | ,, | ,, | ,, |
| ୧୧ | ରତନ ରନ୍ଧାରି | ଭୁରୁଞ୍ଜି | ,, | ,, | ,, |

| | ଶହୀଦ ନାମ | ଗ୍ରାମ | ଥାନା | ଶହୀଦ ପି.ଠ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|---|
| ୧୨ | ରାମଚନ୍ଦ୍ର ଅମାନାତ୍ୟ | ପୁସୁଗାଁ | ,, | ,, | ,, |
| ୧୩ | ଘାସି ଜାନି | ନୂଆଗାଁ | ,, | ,, | ,, |
| ୧୪ | ଶୁକୁ ମୁଦୁଲି | ସୁଲବାଇ | ,, | ,, | ,, |
| ୧୫ | ରତନ ପୂଜାରି | ଉସୁରି ପଦର | ,, | ,, | ,, |
| ୧୬ | ଘାନବନ୍ଧୁ ଜାନି | ନୂଆଗାଁ | ,, | ,, | ,, |
| ୧୭ | ବୁଦୁ ଅମାନାତ୍ୟ | ଭୁରୁଞ୍ଜି | ,, | ,, | ,, |
| ୧୮ | ଜଗନ୍ନାଥ ଅମାନାତ୍ୟ | ଗାବପୁଟ | ,, | ,, | ,, |
| ୧୯ | ସହଦେବ ପୂଜାରି | ପଡେଇଗୁଡା | ,, | ,, | ,, |
| ୨୦ | ବସ୍ତ୍ରରିଆ ଉଡରି | ବଲାଇଗୁଡ଼ା | ପାପଡାହାଣ୍ଡି | ,, | ,, |
| ୨୧ | ଭଗବାନ ଉଡରି | ମନ୍ତ୍ରୀଗୁଡ଼ | ,, | ,, | ,, |
| ୨୨ | କଟନା ଦୋରା | ଫଟାଙ୍ଗୀ | ଫଟାଙ୍ଗୀ | କୋରାପୁଟ ଜେଲ୍‌ରେ | ଶତ୍ରୁର ଲାଠିମାଡ଼ରେ |
| ୨୩ | ଗୋପିନାଥ ପୂଜାରି | ସାନଗୁମା | ମାଟିଲ | ,, | ,, |
| ୨୪ | କଣ୍ଡ୍ରେସୁନା ଝରିଆ | କଆଙ୍ଗ | ,, | ,, | ,, |

| | ଶହୀଦଙ୍କ ନାମ | ଗ୍ରାମ | ଥାନା | ଶହୀଦ ପୀଠ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|---|
| ୨୫ | ଗୁରୁ କଟିଆ | ଝିମସପୁଟ | ,, | ,, | ,, |
| ୨୬ | ଜଦେନାଥ ଓଡ଼ | ବୈଶାଖଘାଟ | ,, | ,, | ,, |
| ୨୭ | ବଳରାମ ଭୂମିଆ | ଟେମୁରୁପାଲି | ,, | ,, | ,, |
| ୨୮ | ମଙ୍ଗଳା ମାଢ଼କାମି | ସରଗିଗୁଡ଼ା | ,, | ,, | ,ⵏ |
| ୨୯ | ସୋମନାଥ ଭୂମିଆ | ଜଦେଗିର | ,, | ,, | ,, |
| ୩୦ | ଚନ୍ଦ୍ର ବାକା | ନାଇକଗୁଡ଼ା | ,, | ,, | ,, |
| ୩୧ | ଦାମା ପୂଜାରୀ | ଚଲାଣାଗୁଡ଼ା | ,, | ,, | ,, |
| ୩୨ | ଶୁକ୍ର ଗୋଟେ | ସଜ୍ଜଲଗୁଡ଼ା | ,, | ,, | ,, |
| ୩୩ | ଗୋବିନ୍ଦ ଭୋପେ | ଗାଲଙ୍ଗୀ | ,, | ,, | ,, |
| ୩୪ | ସମ୍ବାରୁ ନାଇକ | ପିଡ଼ାଡ଼ଙ୍ଗ | ,, | ,, | ,, |
| ୩୫ | ଅର୍ଜୁନ ଭୂମିଆ | ସାନଗୁମା | ,, | ,, | ,, |
| ୩୬ | ଚୈତନ୍ୟ ପୂଜାରୀ | ବାକଲଗୁଡ଼ା | ,, | ,, | ;, |
| ୩୭ | ଲଇଖନ ସମରଥ | ସାରଙ୍ଗପାଲି | ,, | ,, | ,, |

| | ଶହୀଦଙ୍କ ନାମ | ଗ୍ରାମ | ଥାନା | ଶହୀଦ ସ୍ଥଳ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|---|
| ୩୮ | ଭକତ କରା | ଜବାଗୁଡ଼ା | ପାଡୁଆ | " | " |
| ୩୯ | ଡମ୍ବରୁ ପିଶା | ମାଲେଗାଁ | " | " | " |
| ୪୦ | ଭଗବାନ କରା | ଜନପଡ଼ା | " | " | " |
| ୪୧ | ଆଦୁ ଗଲନ୍ତ | ପ୍ରତଣ୍ଡି | " | " | " |
| ୪୨ | ସମରା ମାଝି | ସିନ୍ଧପୁଟ | " | " | " |
| ୪୩ | ଲଙ୍ଗର ଧନୁର୍ଜୟ | ସାକୁଲୁ | " | " | " |
| ୪୪ | ଭଗବାନ ଖିଲ | ବାଦ୍ରା | ଜୟପୁର | କୋରାପୁଟ ଜେଲରେ | ରୋଗର ବିନା ଚକିତ୍ସାରେ |
| | ଖଗପତି ପୂଜାରୀ | ପରସଲି | ବରିଗୁମା | " | " |
| | ହରି ଅମାନାତ୍ୟ | ବାମଣି କୋଟ | ନବରଙ୍ଗପୁର | " | " |
| ୪୭ | ଭବାନୀ ବଡସ | ସାନ କୁମୁଲ | " | " | " |
| ୪୮ | ରଘୁନାଥ ରନ୍ଧାରୀ | ଭୁରଞ୍ଜି | ତେନ୍ତୁଲଖୁଣ୍ଟି | " | " |
| ୪୯ | ଗଦାଧର ମୁଦୁଲି | ପିଲବାସନ | ତେନ୍ତୁଲ ଖୁଣ୍ଟି | " | " |
| ୫୦ | ମଦନ ଭତରା | କୁସୁମି | " | " | " |

| | ଶହୀଦ ନାମ | ଗ୍ରାମ | ଥାନା | ଶହୀଦ ସ୍ଥାନ | କେଉଁ ଅବସ୍ଥାରେ ଶହୀଦ ହେଲେ |
|---|---|---|---|---|---|
| ୫୧ | ସଦାଶିବ ରଣା | ମଗୁଗାଁ | ” | ” | ” |
| ୫୨ | ମୂଦଆ ଉତର | କଣାଗୁଡ଼ାକପାଗୁମୁଣ୍ଡା | କଡ଼ଙ୍ଗା | କୋରାପୁଟ ଜେଲ୍‌ରେ | ” |
| ୫୩ | ଖଗେଶ୍ୱର ମାଝି | ଜାମ୍ବୁଗୁଡ଼ା | ମୈଦଲପୁର | ” | ” |
| ୫୪ | ଧବୁଲୁ ପାଇକ | ଚଟାଗୁଡ଼ା | ” | ” | ” |
| ୫୫ | ବାଳକି ବତର | ଗପିଗୁଡ଼ା | ” | ” | ” |
| ୫୬ | ଦଣ୍ଡ ବଲର | ” | ” | ” | ” |
| ୫୭ | ଜଣ୍ଡ୍ରି କାଉତର | ଏକଘ | ପାପଡ଼ାହାଣ୍ଡି | ” | ” |
| ୫୮ | ମାଧବ ମାଝି | ମାଝିଗୁଡ଼ା | ” | ” | ” |
| ୫୯ | କାଳଆ ମାଝି | ଭାନଆଗୁଡ଼ା | ଡାବୁଗାଁ | ” | ” |
| ୬୦ | ଜଗୁ ମାଝି | ଚେଗଟି ଆମ୍ବ | ” | ” | ” |
| ୬୧ | ବନମାଳୀ ହରିଜନ | ପାଟି | ” | ” | ” |
| ୬୨ | ଜଗା ପୂଜାରୀ | ବରଣ୍ଡି | ଉମରକୋଟ | ” | ” |
| ୬୩ | ସୁକମନ ଉତର | ଗପିଗୁଡ଼ା | ମୈଦଲପୁର | ନବରଙ୍ଗପୁର ଜେଲ୍‌ରେ | ” |

| | ଶହୀଦଙ୍କ ନାମ | ଗ୍ରାମ | ଥାନା | ଶହୀଦମାନେ କେଉଁ ଅବସ୍ଥାରେ ଶହୀଦ ହେଲେ | | |
|---|---|---|---|---|---|---|
| ୬୪ | ପଶୁରାମ ମାଳି | ଚନ୍ଦ୍ରପୁର | ” | ” | ” | |
| ୬୫ | ଲଇଖଣ ମ୍ରାଷ୍ଟା | ନୂଆଗାଁ | ” | ” | ” | |
| ୬୬ | ଚେତୁ ଘାଇକ | ଗର୍ଦଗୁଡ଼ା | ” | ” | ” | |
| ୬୭ | ମଙ୍ଗଲୁ ଉତର | ଉମ୍ବରଗାଁ | କଡଙ୍ଗା | ” | ” | |
| ୬୮ | ଡ଼ମ୍ବରୁ ମାଝି | ଲଣ୍ଡଗୁଡ଼ା | ” | ” | ” | |
| ୬୯ | ଘାସିଆ ଗଣ୍ଡ | ” | ” | ” | ” | |
| ୭୦ | ପରମାନନ୍ଦ ସଉରା | କଙ୍ଗ୍ରା | ନବରଙ୍ଗପୁର | ନବରଙ୍ଗପୁର ହସପିଟାଲ | ଛେତୁର ଗୁଳିରେ | |
| ୭୧ | ସଦାଶିବ ବେହେରା | ଜୟପୁର | ଜୟପୁର | କୋରାପୁଟ | ଜେଲ୍‌ରେ | ବେତର ବନାଡକାହାରେ |
| ୭୨ | ଡମ୍ବରୁ ଚକଆ | ” | ” | ” | ” | |
| ୭୩ | ଲଇଖଣ ଡ଼ମ୍ବ | ଲଲୁଗାଁ | ମାଥଲି | କୋରାପୁଟ ଜେଲ୍‌ରେ | ଛେତୁର ଗୁଳି ମାଡ଼ରେ | |

ଏମାନଙ୍କର କଥା ଆଜି ଭାରତ ଇତିହାସରେ ଲେଖା ହୋଇନାହିଁ । ସେମାନେ ଗାନ୍ଧୀ ମହାତ୍ମାଙ୍କୁ ଦେଖି ନ ଥିଲେ, କେହି କେହି ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ଦେଖିଥିବେ ଅବା, ଅନଗ୍ରୁଆ ଅଞ୍ଚଳ ସେ କୋରାପୁଟ, ସେହି ଭୂଇଁର ତଥା କଥିତ ଟଳୁଆ ଲୋକ ଏହି ଆଦିବାସୀ, ଯିଏ ଖବର୍ କମ୍ ବୁଝିଥିଲ ସ୍ୱାଧୀନତାର ତତ୍ତ୍ୱ, କିନ୍ତୁ ବେଶ ଠିକ୍ ବୁଝିଥିଲା ଗାନ୍ଧୀ ମହାତ୍ମାର ଦୂତମାନେ ଯାହା କହୁଛନ୍ତି, ତାହା ତା'ର ଭଲପାଇଁ । ସେଥିପାଇଁ ସେ ଜେଲ୍ ଯିବ, ମାଡ଼ ଖାଇବ, ମରିଗଲେ ମରିଯିବ ସିନା, ଚେଷ୍ଟା କରିବ । ଯଦି ଏ ସାହୁକାର, ମୁଣ୍ଡି, କାଳିଞ୍ଜି, ପୋଲିସ୍, ଫରେଷ୍ଟ୍ ଗାର୍ଡ଼ ଅମିନ, ଓ ମଧ୍ୟ ପିଆଦାମାନଙ୍କର ନିଷ୍ଠୁର କବଳରୁ ତାକୁ ମୁକୁଳିବାକୁ ହେବ, ତେବେ ସେ ଏଇ ଆନ୍ଦୋଳନରେ ଝାସଦେବ । ଏହି ବିଶ୍ୱାସରେ ଯିଏ ଜେଲ୍‌ର ଉଚ୍ଚା ପାଚେରି ଭିତରେ ଅଜ୍ଞାତରେ ମରିଗଲା, ତାକୁ ଶହୀଦ ନ କହି ଆଉ କ'ଣ କୁହା ଯାଇପାରେ ?

୭ମାସର (ଜେଲ୍ ଜୀବନ ଶେଷ ଆସିଲା, କିନ୍ତୁ ଦିନେ ହଠାତ୍ ଆମକୁ ଶୁଣାଇ ଦିଆଗଲା ଯେ ଅନିର୍ଦ୍ଦିଷ୍ଟ କାଳପାଇଁ ଆମେ ଅଟକ ବନ୍ଦୀ ରହିବୁ । ସରକାର ଯେବେ ଚାହିଁବେ ତେବେ ମୁକୁଳାଇବେ । ମୋ ସାଙ୍ଗରେ ଆଉ ୪ଜଣ ମଧ୍ୟ ରହିଲେ । ସେଥି ମଧ୍ୟରୁ କୋରାପୁଟ ଜିଲ୍ଲାର ୩ଜଣ ହେଲେ, ନବରଙ୍ଗପୁରର ମହମ୍ମଦ ବାଙ୍ଗା ଓ ଧନୁପୂଜାରୀ, ଦଶମନ୍ତପୁର ଯିବାରାସ୍ତାରେ କଇଁସାର ଗୁଡ଼ାର ଲମା ସାଉନ୍ତା । କିଛିଦିନ ପରେ ଆମ କୋଠରୀର ପଞ୍ଚମ ବନ୍ଦୀ ବନ୍ଧୁ ସୁରେନ୍ଦ୍ରନାଥ ଦ୍ୱିବେଦୀ ଆସି ପହଞ୍ଚିଲେ । ଆମର ରୋଷେଇ କରିବା ଓ ଅନ୍ୟାନ୍ୟ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ସାଧାରଣ କଏଦୀ କେତେଜଣ ଆସୁଥିଲେ । ଖାଇବା ପିନ୍ଧିବା ଛଡ଼ା ସଫା ସୁତୁରା ଖର୍ଚ୍ଚ ବା Toilet ବାବଦରେ ସରକାରଙ୍କ ପକ୍ଷରୁ

୩ମାସକୁ ଟ ୨୭ ଲେଖାଏଁ ଭତ୍ତା ମିଳେ । ସେହି ଟ ୨୭ରେ ୧୯୪୩।୪୪ ମର୍ଯ୍ୟାଦାରେ ବହୁତ ଜିନିଷ କିଣାଯାଇ ପାରୁଥିଲା ବାଙ୍ଗାବାବୁ ଓ ମୁଁ ଯେଉଁ ପଇସା ପାଉ ତାହା ସାଧାରଣ କଏଦୀଙ୍କ ପାଇଁ ଖର୍ଚ୍ଚ କରୁ । ବାଙ୍ଗାବାବୁ ଓଡ଼ିଆ ଘରର ବଢ଼ିଆ ପିଠାପଣା କରିବାରେ ଧୁରନ୍ଧର । ବେଳେ ବେଳେ ସେ ପିଠା କରି ଅନ୍ୟ ସମସ୍ତ ରାଜନୈତିକ ବନ୍ଦୀମାନଙ୍କ ପାଖକୁ ପଠାନ୍ତି । ତା ଛଡ଼ା ଆଦିବାସୀ କଏଦୀମାନଙ୍କର ପିକା ଖାଇବାକୁ ଭାରି ସଉକ, ଅନେ କ ମାଦକଦ୍ରବ୍ୟ ଖାଉନା, ଜେଲ୍‌ରେ ମଧ୍ୟ ସେ ସବୁ ମିଳିବାର ସୁବିଧା ନଥାଏ ଆଦିବାସୀମାନଙ୍କୁ, ଆମେ ୱାର୍ଡରମାନଙ୍କୁ ପଇସା ଦେଉଁ, ସେ ଧୂଆଁପତ୍ର ଓ ପିକା ଆଣି କଏଦୀଙ୍କୁ ଦିଅନ୍ତି ।

ଜେଲ୍‌ରେ ନିୟମିତ ଆସନ ପ୍ରାଣାୟାମ କରୁଥିଲି । ସେହି କୋରାପୁଟ ଜେଲ୍‌ରେ କଟକର ଭୈରବଚନ୍ଦ୍ର ମହାନ୍ତିଙ୍କର ଜଣେ ସମ୍ପର୍କୀୟ ଭାଇ ବୈଷ୍ଣବ ମହାନ୍ତି ରାଜନୈତିକ ବନ୍ଦୀଭାବେ ଥାଆନ୍ତି । ସେ ନିଜେ ଆସନ କରୁଥିଲେ ଓ ଆମକୁ ଶିଖାଇଥିଲେ । ସେଲ୍ ଭିତରେ ପ୍ରତ୍ୟୁଷରୁ ଆସନ କରେ, ଶୀର୍ଷାସନ ପ୍ରାୟ ୫ମିନିଟ ପାଇଁ କରେ ଓ ଅନ୍ୟାନ୍ୟ କେତେକ ଆସନ କରେ । ପ୍ରାଣାୟାମରେ ପ୍ରାୟ ୩ମିନିଟ୍ ଯାଏ ପବନ ରଖି ପାରୁଥିଲି । ସେହି ବର୍ଷ ନିଗମାନନ୍ଦଙ୍କର ଯୋଗୀଗୁରୁ ଇତ୍ୟାଦି ବହି ମଗାଇ ପଢ଼ିଥିଲି । ଜେଲ୍‌ରୁ ବାହାରିବା ପରେ ସାମାଜିକ କାର୍ଯ୍ୟର ତାଡ଼ନାରେ କ୍ରମେ ଆସନ ପ୍ରାଣାୟାମ ଛାଡ଼ିଦେଲି ।

୧୯୪୫ ଅପ୍ରେଲ ମାସ ବେଳକୁ ପ୍ରାୟ ଅଧିକାଂଶ ବନ୍ଦୀ ଖଲାସ ହୋଇ ଯାଇଥିଲେ । ତା'ପର ପର୍ଯ୍ୟାୟରେ ରବି ଘୋଷ, ଗୌରଙ୍ଗ ଦାସ ଓ ମୁଁ ଖଲାସ ହେଲୁ । ମୁଁ ଆସିଲି ବେଳକୁ

ସୁରେନ୍ଦ୍ର ବାବୁ ଓ ବାଙ୍କାବାବୁ ଆହୁରି ଖଲାସ ହୋଇ ନଥିଲେ । ୧୯୪୨ ଅଗଷ୍ଟ ୧୫ ତାରିଖରେ ମୁଁ ଗିରଫ ହୋଇଥିଲି ଓ ୧୯୪୫ ମସିହା ଅଗଷ୍ଟ ମାସ ୨୭ତାରିଖରେ ଜେଲ୍‌ରୁ ଖଲାସ ହେଲି ।"

—※—

# ଷଷ୍ଠ ଅଧ୍ୟାୟ

## ଭୋଟେ ହେ। ତୁହ୍ମ ରକ୍ଷାକର

ବିଶ୍ୱନାଥ ଜେଲ୍‌ରୁ ବାହାରିଲା ବେଳକୁ ତାଙ୍କ ଗୃହ, ପରିବାର ଓ କାର୍ଯ୍ୟ ପରିସରରୁ ସଙ୍ଗ ଅଲଗା ହୋଇଯାଇଥିଲା । ଘର ଛାଡ଼ିଥିଲେ ୮ ବର୍ଷ ତଳେ, ଘର କହିଲେ ସେ ଏବେ ବୁଝିଥିଲେ ରହିବା ପାଇଁ ଏକ ସ୍ଥାନ, ପରିବାରର ଅର୍ଥ ଯେଉଁମାନେ ନ୍ୟାୟ ମାଇ ପାରୁନାହାନ୍ତି ଓ କାର୍ଯ୍ୟ ପରିସର କେବଳ କୁଜେନ୍ଦ୍ରୀ ନୁହେଁ, ଏକ ବିସ୍ତୃତ ଆଦିବାସୀ ଅଞ୍ଚଳ । ଜେଲ୍‌ରୁ ବାହାରି ତାଙ୍କର ଇଚ୍ଛା ହେଲା ଜେଲ୍ ଜୀବନର ପରବର୍ତ୍ତନ ସହକର୍ମୀମାନଙ୍କୁ ଭେଟି ତାଙ୍କର ସାମାଜିକ ସ୍ଥିତି ସମ୍ପର୍କରେ ଜାଣିବାକୁ । ସେ କୋରାପୁଟ, ନବରଙ୍ଗପୁର ଓ ଜୟପୁରର ବିଭିନ୍ନ ଗାଁରେ ପ୍ରାୟ ୧୫ଦିନ ଘଣ୍ଟେ ବୁଲିଲେ । ସେହି କର୍ମୀମାନେ ସେ ପର୍ଯ୍ୟନ୍ତ ଜାଣି ନଥାନ୍ତି ଯେ ଦେଶ ସ୍ୱାଧୀନ ହେବା ପାଇଁ ସମସ୍ତ ଆୟୋଜନ ଚାଲିଲାଣି, ଅଳ୍ପଦିନ ମଧ୍ୟରେ କିଛି ଗୋଟାଏ ବ୍ୟବସ୍ଥା ହେବ । ଆଲୋଚନା ସମୟରେ ବିଶ୍ୱନାଥ ବୁଝାଇଲେ ଯେ ଗତ ୩୦ ବର୍ଷ ଧରି ଯେଉଁ ଦୁଃଖ ଦୁର୍ଦ୍ଦଶା ଓ ଜେଲ୍ ଜୀବନ ଗଲାନି, ତାର ସୁଫଳ ମିଳିବା ଆଉ ବେଶିନାହିଁ । ସେଠାରୁ ସେ କୁଜେନ୍ଦ୍ରୀ ଆସିଲେ ଓ ସେତେବେଳେ ଶବରର ଯେଉଁ ଘରେ ପୂର୍ବେ ରହୁଥିଲେ ସେହିଠାରେ ରହିଲେ ।

ଅଳ୍ପଦିନ ମଧ୍ୟରେ ଗାଆଁଲୋକେ ଗୋଟିଏ ନୂଆଘର ତିଆରି କରିଦେଲେ । କିନ୍ତୁ କାର୍ଯ୍ୟକ୍ରମ ସଫଳରେ ଗୁରୁଙ୍କ ସହ ପରାମର୍ଶ କରିବା ଉଚିତ ମନେକରି ସେ ବଡ଼ି ଆଶ୍ରମକୁ ଗଲେ । ଆଶ୍ରମଘର ଆନ୍ଦୋଳନ ସମୟରେ ନଷ୍ଟ ହୋଇ ଯାଇଥିଲା । ଗୋପବାବୁ ଗୋବର୍ଦ୍ଧନ ପ୍ରଧାନଙ୍କ ଘରେ ରହୁଥିଲେ । ସେ ପରାମର୍ଶ ଦେଲେ, ରଚନାତ୍ମକ କର୍ମୀମାନେ ହଠାତ୍ ନିଜକୁ ପୁନଃ ପ୍ରତିଷ୍ଠିତ କରିବାକୁ ହେଲେ ସରକାରୀ ସାହାଯ୍ୟ ଉପରେ ନିର୍ଭର କରି ନେବନାହିଁ । ୩ ବର୍ଷ ମଧ୍ୟରେ ବହୁତ ରଚନାତ୍ମକ ସଂଘ ଓ ଅନୁଷ୍ଠାନ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଛନ୍ତି । ତେଣୁ ଲୋକ ଆଧାରିତ କାର୍ଯ୍ୟ ଛଡ଼ା ଅନ୍ୟବାସ୍ତା ନାହିଁ । ସ୍ଥାନୀୟ ଲୋକଙ୍କ ଶ୍ରଦ୍ଧା ଉପରେ ନିର୍ଭର କରି, ସ୍ଥାନୀୟ ସମସ୍ୟା ଓ ସମ୍ବଳକୁ ବୁଝି କାମ କରିବାକୁ ହେବ । ଗୁଣୁପୁର ଅଞ୍ଚଳରେ କପରି ସୂତାକଟା ଓ ଲୁଗାବୁଣାର ବିକାଶ ହେବ ଓ ଆଦିବାସୀମାନେ ଶୋଷଣ ମୁକ୍ତ ହେବେ ଏହି କାର୍ଯ୍ୟକ୍ରମକୁ ସଫଳ କରିବାକୁ ଗାନ୍ଧୀ ସେବାସଂଘ ସ୍ଥିରକଲେ । ସଂଘର ଓଡ଼ିଶା ଶାଖା ପରିଚାଳକ ସ୍ୱର୍ଗତ ଈଶ୍ୱରଲାଲ ବ୍ୟାସ କୁଟେନ୍ଦ୍ରୀ ଆଶ୍ରମଘର ନିର୍ମାଣ ପାଇଁ ବାର ଟଙ୍କା ଦେଲେ ।

ପାରମ୍ପରିକ ଭାବେ ତ ଗୁଣୁପୁରର ବହୁତ ଗ୍ରାମରେ କପା ଚାଷ ହେଉଥିଲା । ବିଶ୍ୱନାଥ ବିଭିନ୍ନ ପ୍ରକାରର କପା ମଞ୍ଜି ନେଇ ପ୍ରୟୋଗକ୍ଷେତ୍ର କରି ଚାଷ ଆରମ୍ଭ କଲେ । ରଙ୍ଗ କପା, କାମ୍ବୋଡ଼ିଆ କପା ଇତ୍ୟାଦି ଚାଷ ହେଲା । ନୂଆ ଅରଟ ଦିଆଗଲା । କପା ସଂଗ୍ରହ କରିବା କାମ ମଧ୍ୟ ହାତକୁ ନିଆଗଲା । ଲୋକମାନଙ୍କ ସହଯୋଗ ମିଳିବା ମୋଟେ କଷ୍ଟକର ହେଲାନାହିଁ । ଲୋକେ ସତେ ଯେପରି ବିଶ୍ୱନାଥ କେଉଁଦିନ ଜେଲ୍‌ରୁ ଫେରିବେ, ତାହାଙ୍କୁ ଅପେକ୍ଷା କରିଥିଲେ । ଯେଉଁ ଗାଆଁକୁ ଗଲେ ତାଙ୍କୁ ମୁଠେ

ଖାଇବାକୁ ମିଳେ । ଆଦିବାସୀ ସହଯୋଗୀ ଖୋଜିବା ଓ ତାଙ୍କୁ ନିର୍ଭୀକ ତଥା କର୍ମକୁଶଳୀ ହେବାପାଇଁ ତାଲିମ ଦେବା ତାଙ୍କ କାମ ହେଲା । କେତେ ମାସ ପରେ ଗାନ୍ଧୀ ସେବାସଂଘ ପୁଣି ଆର୍ଥିକ ସାହାଯ୍ୟ ଦେଲା । ବାମୁଣୀ ଗାଆଁରେ ତନ୍ତ ତିଆରି ହେଉଥିଲା ଓ ପାରଳାଖେମୁଣ୍ଡି ପାଖ ପାତ ପାଟଣା ବା ପୁରୁଣା ପାଟଣାରେ ଠକଠକ ତନ୍ତ ତିଆରି ହେଉଥିଲା । ୬ଟି ଠକଠକ ତନ୍ତ ଅଣାଯାଇ କୁଞ୍ଜେନ୍ଦ୍ରୀ ଆଶ୍ରମରେ କାମଶାଳା ଖୋଲିଗଲା, ପ୍ରଥମେ ବୟସ୍କ ଲୋକମାନଙ୍କୁ ନୂଆ ତନ୍ତରେ ତାଲିମ ଦିଆଗଲା । ସେମାନଙ୍କ ମଧ୍ୟରୁ କେତେକ ପୁରୁଣା ତନ୍ତରେ କାମ କରୁଥିଲେ । ଶିକ୍ଷାର୍ଥୀମାନଙ୍କୁ ଷ୍ଟାଇପେଣ୍ଡର ବ୍ୟବସ୍ଥା କରିବା ସମ୍ଭବ ନଥିଲା । କିଏ ପଇସା ଦେବ, କେଉଁଠୁ ଆଣିବ ? ଆଜିର ଭାରତ ଓ ସ୍ୱାଧୀନତା ପୂର୍ବର ଭାରତକୁ ତୁଳନା କରି ଦେଖିଲେ ଜାଣିହେବ ଯେ ପ୍ରତିକୂଳ ପରିସ୍ଥିତିରେ ଏ ଜାତି କେତେ ପରିଶ୍ରମ କରିଥିଲା ନିଜର ତ୍ୟାଗ, ପରିଶ୍ରମ ଓ ସଂଯମ ବଳରେ ଉନ୍ନତ ପଥରେ ଆଗେଇବାକୁ ।

ଗାନ୍ଧୀ ମାଇଲି ବ୍ୟାସାର୍ଦ୍ଧରୁ ୧୨ ବର୍ଷରୁ ୨୦ ବର୍ଷର କିଶୋରମାନେ ଗାନ୍ଧୀ କାମ କରିବେ ବୋଲି ଆଗ୍ରହରେ ଆସନ୍ତି । ସୂତାକଟାରେ ଲାଗନ୍ତି । ବିଶ୍ୱନାଥଙ୍କର ଉଦ୍ଦେଶ୍ୟ ଥାଏ ପିଲାମାନେ ସୂତାକଟା ଓ ଲୁଗାବୁଣା ଶିଖନ୍ତୁ, କିନ୍ତୁ ସେ ପିଲା-ମାନଙ୍କୁ କେବେ ସୂଚନା ଦିଅନ୍ତି ନାହିଁ ଯେ ଏହି ଉଦ୍ଦେଶ୍ୟ ସାଧନ କରିବା ପାଇଁ ସେ ଅତ୍ୟଧିକ ଆଗ୍ରହୀ । ସେ ବିଶ୍ୱାସ କରୁଥିଲେ ପିଲା-ମାନଙ୍କର ଯଦି ସ୍ୱତଃ ଆଗ୍ରହ ବଢିବ ସେମାନେ କାମ ଶିଖିବେ, ତାଙ୍କ ଉପରେ ସିଧା ଲକ୍ଷ କରି ଲଦି ଦେବା ଠିକ୍ ହେବ ନାହିଁ । ପିଲାମାନେ ନୂଆ ଉତ୍ସାହରେ ଚରଖାରେ କେମିତି ସୂତାକଟା ହେଉଛି ଦେଖିବାକୁ ଆଉ ସୂତା କାଟିବାକୁ ଆଗ୍ରହ ପ୍ରକାଶ କରନ୍ତି ଓ କାଟୁ-

ଦିନ ପରେ ନୂଆ ତନ୍ତ ଚଳାଇବାକୁ ଇଚ୍ଛା କରନ୍ତି । ତନ୍ତଶାଳକୁ ପିଲାଏ ଗଲେ । ବିଶ୍ଵନାଥ କହନ୍ତି "କିରେ, ମାକୁ ଚଳାଇବାକୁ ଇଚ୍ଛା ହେଉଛି କି ? ଯାଆ, ଯାଆ, ପଲଟାର ପଦ ମନ ହେଉଛି, ମାକୁ ମାର ।' ସେ ଯାଇ କଣ୍ଡା ଚଳାଏ । ସେ ଭାବେ, ତାର ଆଗ୍ରହ ଥିବାରୁ ଦୟାକରି ତାକୁ ଏ ସୁଯୋଗ ଦିଆଯାଉଛି । ବିଶ୍ଵନାଥ ଧରି ନେଇ ଥାଆନ୍ତି, ପିଲାମାନେ ପଛେ ସୂତା ଛିଣ୍ଡାନ୍ତୁ, ତନ୍ତ ଖରାପ ହୋଇଯାଉ କିନ୍ତୁ ସେମାନେ ଖେଳୁ ଖେଳୁ ଶିଖନ୍ତୁ, ତାଙ୍କୁ କେହି କହୁଛି ବୋଲି ସେମାନେ ଏକାର୍ଯ୍ୟ କରିବାକୁ ଆସିଛନ୍ତି, ଏ ଧାରଣା ନହେଉ । ପିଲାଏ ଘରୁ ପେଜପାଣି ଖାଇ ସକାଳୁ ଚାଲି ଆସନ୍ତି, ସନ୍ଧ୍ୟା ବେଳକୁ ଯାଆନ୍ତି । ସ୍ଵଚ୍ଛଳ ଆଦିବାସୀ ଓ ମୁଷ୍ଟିମେୟ ଅଣଆଦିବାସୀ ଲୋକେ ଆଶ୍ରମକୁ ଚାନ୍ଦା ଦିଅନ୍ତି । ଚାନ୍ଦା କହିଲେ ଟଙ୍କା ପଇସା ନୁହେଁ, ନିଜ କ୍ଷେତରେ ଯେଉଁ ଚାଷହୁଏ, ସେଥିରୁ ମିଳୁଥିବା ଧାନ, ଜନା, ମକା ଇତ୍ୟାଦିରୁ କିଛି କିଛି ଦିଅନ୍ତି । ତାକୁ ଶିଝାଇ ବିଶ୍ଵନାଥ ଓ ଛାତ୍ରମାନେ ମଧ୍ୟାହ୍ନ ଭୋଜନ କରନ୍ତି । ସେତେବେଳକୁ କଣ୍ଟ୍ରୋଲ ଲୁଗା ସହର ଓ ବଡ଼ ବଡ଼ ଗାଆଁରେ ବିକ୍ରୀ ହେଉଥାଏ । ତାହା ମିଲ୍‌ଲୁଗା ହୋଇଥିବାରୁ ଗାଆଁ ଲୋକେ ମିଲ୍‌ଲୁଗା ପିନ୍ଧିବେ ନାହିଁ ବୋଲି ସିଦ୍ଧାନ୍ତକଲେ । ଯେଉଁମାନେ ଲୁଗା ବୁଣା ଶିଖିଲେ ସେମାନେ ନିଜ ଗାଆଁରେ ଲୁଗା ବୁଣିଲେ ।

ସ୍ଵାଧୀନତା ଆସିଲା । ଯେଉଁ ସ୍ଵାଧୀନତା ମିଳିବା ପାଇଁ ଏତେ ଲୋକମଲେ, ଏତେ ଲୋକ ମାଡ଼ ଖାଇଲେ, ଜେଲ୍‌ଗଲେ, ସେ ସ୍ଵାଧୀନତା ଆସିବାରେ ବିଶ୍ଵନାଥଙ୍କର ବିଶେଷ କିଛି ଭାବାନ୍ତର ଆସିଲା ନାହିଁ । ଲଢ଼େଇ ସରିଗଲା ସେହିମାନଙ୍କର, ଯେଉଁମାନେ ରାଜନୈତିକ ପଦ ପଦବୀ ପାଇଁ ଲାଳାୟିତ ହୋଇ ସ୍ଵାଧୀନତା ଆନ୍ଦୋଳନରେ ଯୋଗଦେଇଥିଲେ, ଅନ୍ୟଦଳଟି ମହାତ୍ମାଗାନ୍ଧୀଙ୍କ

ସଙ୍ଘ ରହିଲେ ସ୍ୱାଧୀନତା ପରେ, ସେମାନଙ୍କର କାମ ହେଲା ଲୋକଙ୍କ ସମସ୍ୟା ଆମେ ସମାଧାନ କରିବା, ସରକାରଙ୍କ ସାହାଯ୍ୟ ମିଳୁ ଅବା ନମିଳୁ ଆମେ କାମକରିବା । ଭାରତ ଇତିହାସରେ ଏହା ଏକ ବିରଳ ପର୍ବ, ଯେଉଁମାନେ ସ୍ୱାଧୀନତା ପାଇଁ ନିଷ୍ଠାର ସହ ଲଢ଼ିଥିଲେ, ସ୍ୱାଧୀନତା ଆସିଯିବାରେ ସେମାନେ ଆତ୍ମହରା ହୋଇ ଯାଇନଥିଲେ । ଅନ୍ୟ ପ୍ରତ୍ୟେକଟି ଦିନ ପରି ୧୯୪୭ ମସିହାର ଅଗଷ୍ଟ ପନ୍ଦର ତାଙ୍କ ପାଇଁ ଏକ ସାଧନା ଓ ପରୀକ୍ଷାର ଦିବସ ଥିଲା । ସ୍ୱାଧୀନତା ପ୍ରାପ୍ତି ଏକ ଉପଲକ୍ଷ୍ୟ, ସତ୍ୟ ଓ ଅହିଂସାର ପ୍ରୟୋଗ ଓ ତା ଦ୍ୱାରା ସମସ୍ୟା ସମାଧାନ କରିବା ସେମାନଙ୍କର ନିତ୍ୟ ନୈମିତ୍ତିକ ଧାରା ହୋଇଥିଲା । ଓଡ଼ିଶାରେ ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ ଓ ରମା ଦେବୀ ଯେଉଁ ଗୋଷ୍ଠୀର ପୁରୋଭାଗରେ ଥିଲେ । ବିଶ୍ୱନାଥ ସେମାନଙ୍କର ଗୋଟିଏ ପାହାଚ ବା ଗୋଟିଏ ପୀଢ଼ି ତଳେ ରହି ଆଦିବାସୀମାନଙ୍କୁ ସ୍ୱାଧୀନତାର ସ୍ୱାଦ ଚଖାଇବାକୁ ସ୍ଥିର କଲେ ।

ଇଂରେଜ ଶାସନ ଚାଲିଯିବା ପରେ ତନ୍ତ ଓ ଚରଖାର ପ୍ରଚାର ପାଇଁ ନୂଆ ସରକାର ଖଦଡ଼ର ବ୍ୟବସ୍ଥା କଲେ । ତେଣୁ ଗୁଣୁପୁର ଅଞ୍ଚଳର ଲୋକମାନେ ଖଦାଡ଼ି ଦଳରେ ତନ୍ତ ଓ ଚରଖା ନେଇ ସୂତାକଟା ଓ ଲୁଗାବୁଣା ଚଳାଇଲେ । ପୁରୁଣା ଚରଖା ଥିଲା, ନୂଆ ଚରଖା ମିଳିଲା । ୧୯୪୮ ମସିହା ବେଳକୁ ଜକୁମ୍ନାଗୁଡ଼ା, ମଟ୍ଟଗଡ଼ା, ଢେଙ୍ଗଗୁଡ଼ାଠାରୁ ଆରମ୍ଭକରି ରୁଗଡ଼ ବାଇ, ଭୁମ୍ବାକଣା, ଗଙ୍ଗାପାଡୁ ଇତ୍ୟାଦି ୩୦।୩୫ ଖଣ୍ଡ ଗାଁରେ ୩ହଜାର ଚରଖା ଚାଲିଗଲା । ସେ ଚରଖାର ସୂତା ସ୍ଥାନୀୟ ତନ୍ତରେ ବୁଣାଗଲା । ଆଗରୁ ଆଦିବାସୀଙ୍କ ବ୍ୟତୀତ ଅନ୍ୟମାନେ ସ୍ୱୟଂ ସୂତା କାଟୁ ନଥିଲେ । କ୍ରମେ ସେମାନେ ମଧ୍ୟ ସୂତା କାଟିଲେ ।

ବିଶ୍ୱନାଥଙ୍କୁ ଯେତେବେଳେ ପ୍ରଶ୍ନ ହୁଏ, ଆପଣ କାହିଁକି ଏକ କ୍ଷୁଦ୍ର ଅଞ୍ଚଳ ଭିତରେ ନିଜର କାର୍ଯ୍ୟାବଳୀକୁ ସୀମିତ ରଖିଲେ, ତାର ଉତ୍ତରରେ ସେ କହନ୍ତି 'କମ୍ ସଂଖ୍ୟକ ଲୋକଙ୍କ ମନରେ ସ୍ଥାୟୀ ପ୍ରଭାବ ପକାଇ ତାଙ୍କର ବିକାଶ କରିବା ଭଲ । ବହୁଲୋକଙ୍କ ମଧ୍ୟରେ କାର୍ଯ୍ୟକରି ସମସ୍ତଙ୍କୁ ପ୍ରଭାବିତ କରିବା ଅତ୍ୟନ୍ତ କଷ୍ଟସାଧ୍ୟ । ଆବଶ୍ୟକୀୟ ମାନସିକ ପରିବର୍ତ୍ତନ କରି ନପାରିଲେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ହେବନାହିଁ । ତେଣୁ ସୀମିତ ଲୋକ ହେଉନ୍ତୁ ପଛେ, ସେମାନଙ୍କ ପଛରେ ସମ୍ବେଦନ ଲାଗିଲେ, କେତେକ ସମସ୍ୟା ନିଶ୍ଚିତ ଭାବେ ସମାଧାନ ହେବ ।" ଅନ୍ତତଃ ଦୁଇ ହଜାର ପରିବାର ଏହି ସୂତାକଟା ଓ ଲୁଗାବୁଣା କାର୍ଯ୍ୟକ୍ରମକୁ ଗ୍ରହଣ କରିନେଇଥିଲେ । ତାହା ତାଙ୍କର ପେଟପୋଷିବା ପାଇଁ ଏକ ବ୍ୟବସାୟ ନଥିଲା, ନିଜର ଲୁଗାପଟା ନିଜେ ତିଆରି କରିବା ଓ ସେଥିପାଇଁ ମିଲ୍‌ମାଲିକଙ୍କ ଉପରେ ନିର୍ଭର ନକରିବା ଏହି କାର୍ଯ୍ୟକ୍ରମର ଉଦ୍ଦେଶ୍ୟଥିଲା । ବିଶ୍ୱନାଥ ନିଜେ ସକ୍ରିୟ ଭାବେ କାର୍ଯ୍ୟ କରୁଥିଲେ ମଧ୍ୟ ଲୋକମାନଙ୍କୁ କେବେ ଜାଣିବାକୁ ଦେଉ-ନଥିଲେ ଯେ ଏ କାମ ଅନ୍ୟର ଉପର ଦ୍ୱାରା ସିଦ୍ଧାନ୍ତ ହୋଇ କରାଯାଉଛି, ଲୋକେ ଜାଣୁଥିଲେ ନିଜେ ସେମାନେ ସିଦ୍ଧାନ୍ତ କରୁଛନ୍ତି । ଗାଆଁରେ ଲୁଗା ତିଆରି ହେବା ଭଲ, ତେଣୁ ସେମାନେ କପାଚାଷ କରୁଥିଲେ, ସୂତାକାଟୁଥିଲେ, ଲୁଗା ବୁଣୁଥିଲେ ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଯେତେବେଳେ ଆଦିବାସୀ-ମାନଙ୍କ ପାଇଁ ସାରଙ୍ଗଧର ଦାସ, ଲକ୍ଷ୍ମୀନାରାୟଣ ସାହୁ ଓ ମାଳତୀ ଦେବୀ କାର୍ଯ୍ୟକରୁଥିଲେ । ମିସ୍ ମନ୍‌ରୋ ପାରଳାଖେମୁଣ୍ଡି ଅଞ୍ଚଳରେ, ଉପେନ୍ଦ୍ର ମହାପାତ୍ର କେନ୍ଦୁଝରରେ ଓ ଭରତଚନ୍ଦ୍ର ମହାନ୍ତି ସୁନ୍ଦରଗଡ ଅଞ୍ଚଳରେ କିଛି କିଛି କାମ କରୁଥିଲେ ।

ସ୍ୱାଧୀନତା ପରେ ଉତ୍କଳ ଖଦିମଣ୍ଡଳ ଓ ଉତ୍କଳ ନବଜୀବନ ମଣ୍ଡଳ ନାମକ ଦୁଇଟି ବେସରକାରୀ ସେବାସଂସ୍ଥା ପ୍ରତିଷ୍ଠିତ ହେଲା । ସର୍ବଭାରତୀୟ ଅନୁଷ୍ଠାନ ଚରଖା ସଂଘକୁ ବିକେନ୍ଦ୍ରିତ କରାଯାଇ ଉତ୍କଳ ଖଦିମଣ୍ଡଳ ହେଲା । ୧୯୪୯ରେ ନବଜୀବନ ମଣ୍ଡଳ ଆରମ୍ଭ ହେଲା । ଏହି ଦୁଇଟି ସଂସ୍ଥାର କାର୍ଯ୍ୟକାରୀ ସମିତିରେ ବିଶ୍ୱନାଥଙ୍କୁ ସଭ୍ୟଭାବେ ନିଆଗଲା । କସ୍ତୁରବା ଗାନ୍ଧୀ ସ୍ମାରକ ନିଧି ନାମକ ଅନ୍ୟ ଏକ ସେବା ସଂସ୍ଥା ମଧ୍ୟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ କାମକଲେ । ଏ ଅନୁଷ୍ଠାନରେ ବିଶ୍ୱନାଥ ସଭ୍ୟ ନଥିଲେ ମଧ୍ୟ କୋରାପୁଟ ଜିଲ୍ଲାରେ ଯେଉଁ କର୍ମୀମାନେ ଏ ସଂସ୍ଥା ପକ୍ଷରୁ କାର୍ଯ୍ୟ କରିବାକୁ ଗଲେ ସେମାନେ ତାଙ୍କ ସହ ସଂପର୍କ ରଖି କାର୍ଯ୍ୟକଲେ । କୋରାପୁଟ ଜିଲ୍ଲାରେ ଏହି ୩ଟି ସଂସ୍ଥା ଜରିଆରେ ଯାହାକିଛି ଗଠନ ମୂଳକ କାର୍ଯ୍ୟ କରାଗଲା ତାର ସମନ୍ୱୟ ରକ୍ଷା କରିବାକୁ ସେ ନୈତିକ ଦାୟିତ୍ୱ ଭାବେ ଗ୍ରହଣ କଲେ । ଏ ପରି ଅବସ୍ଥା ୧୯୫୫ ମସିହା ଯାଏ ରହିଲା ।

ସ୍ୱାଧୀନତା ପରବର୍ତ୍ତୀ ଅବସ୍ଥାରେ ସରକାରଙ୍କ ଆଦିବାସୀ ମଙ୍ଗଳ କାର୍ଯ୍ୟକ୍ରମ ସଂପର୍କରେ ଏଠାରେ କିଛି ଉଲ୍ଲେଖ ନକଲେ ଅନ୍ଧମାନେ ହାତୀ ଦେଖିବାର ଉପାଖ୍ୟାନଟି ଅସଂପୂର୍ଣ୍ଣ ରହିଯିବ । ଯେଉଁ କର୍ମଚାରୀମାନେ ବ୍ରିଟିଶ୍ ସରକାରରେ କେତେକାଂଶରେ ସ୍ୱାଧୀନ ମନୋବୃତ୍ତି ଦେଖାଇଥିଲେ ସେମାନଙ୍କୁ ଏ ବିଭାଗର ଦାୟିତ୍ୱ ଦିଆଗଲା । ସମସ୍ତେ ଆଦିବାସୀଙ୍କୁ ଦେଖିଛନ୍ତି, ଜଙ୍ଗଲ ଓ ପାହାଡ଼ ପର୍ବତ ଦେଖିଛନ୍ତି, କିନ୍ତୁ ଆଦିବାସୀଙ୍କ ଦୃଷ୍ଟି କୋଣରୁ ଦେଖିନାହାନ୍ତି, କାରଣ ସେମାନେ ଆଦିବାସୀ ହୋଇ ଯାଇ ନାହାନ୍ତି । ସେମାନଙ୍କର ଦେଶପ୍ରେମ ପ୍ରତି ସନ୍ଦେହ କରାଯାଇ ନପାରେ, କିନ୍ତୁ ଦୁର୍ଗମ ପଥରେ ସେମାନେ ରାସ୍ତା ହୁଡ଼ିଲେ ।

ସରକାରୀ ଢଙ୍ଗରେ ଆଦିବାସୀମାନଙ୍କ ପାଇଁ ବିଦ୍ୟାଳୟ ପ୍ରତିଷ୍ଠା ହେଲା । ୧୯୪୯ ମସିହାରେ ୧ମ ରେଗୁଲେସନ୍ ଆଦିବାସୀମାନଙ୍କ ସ୍ୱାର୍ଥ ସଂରକ୍ଷଣ କଲା । ଜଙ୍ଗଲ ପୋଡ଼ି ଦେଉଥିବା ଯାଯାବର ମାନଙ୍କ ପାଇଁ କଲୋନୀ ତିଆରି ହେଲା । ଲକ୍ଷ୍ମଣ ନାଏକ ଓ ତାଙ୍କର ହଜାର ହଜାର ଆଦିବାସୀ ଭାଇ ଯେଉଁ ତ୍ୟାଗ ସ୍ୱୀକାର କରିଥିଲେ ତା'ର ସମକକ୍ଷ ହେବାପରି ପ୍ରଚୁର ଅର୍ଥ ଆଦିବାସୀଙ୍କ ମଙ୍ଗଳ ନାମରେ ସରକାରଙ୍କ ପକ୍ଷରୁ ବ୍ୟବସ୍ଥା କରାଗଲା । ଚିନ୍ତାମଣି ମିଶ୍ରଙ୍କ ବିଚାର ମନ୍ଦ ନଥିଲା, କିନ୍ତୁ ସାରା ଓଡ଼ିଶାର ଏକ ଚତୁର୍ଥାଂଶ ଏହି ଆଦିବାସୀ ଲୋକଙ୍କ ଉନ୍ନତି ପାଇଁ ତାହା ଫଳ ପ୍ରସୂ ହେଲାନାହିଁ । ଅମ୍ବାଲାଲ ବ୍ୟାସ ମଧ୍ୟ ଜଙ୍ଗଲ ଭିତରେ ରାସ୍ତା ପାଇଲେ ନାହିଁ । ସରକାରୀ ଟଙ୍କା ଯାହାପାଇଁ ଉଦ୍ଦିଷ୍ଟ ତାହାପାଖକୁ ଗଲାନାହିଁ । ଓଡ଼ିଶାର ବିଭିନ୍ନ ଜିଲାରେ ରାଜସ୍ୱ ବିଭାଗ ଓ ଆଦିବାସୀ ଗ୍ରାମମଙ୍ଗଳ ବିଭାଗ ଜରିଆରେ ଯେଉଁ ଟଙ୍କା ଆଦିବାସୀମାନଙ୍କ ବିକାଶ ପାଇଁ ଖର୍ଚ୍ଚ ହେବାକୁ ବ୍ୟବସ୍ଥା ହେଲା, ତାର ଏକ ବୃହତ୍ ଅଂଶ ସରକାରୀ କର୍ମଚାରୀ, ଠିକାଦାର ଓ ବ୍ୟବସାୟୀ ଗୋଷ୍ଠୀ ଅଧାବାଟରୁ ନେଇଗଲେ । ଯେଉଁ କେତେକ ସଚ୍ଚୋଟ ସରକାରୀ କର୍ମଚାରୀ ନିଷ୍ଠାର ସହ ଆଦିବାସୀ ଗାଆଁରେ ସେ ଟଙ୍କା ପହଞ୍ଚାଇ ଦେଲେ ତାହାର ସଦୁପଯୋଗ କରି ପାରିଲେ ନାହିଁ ଆଦିବାସୀ ଲୋକେ । ତା'ର ପ୍ରଧାନ କାରଣ, ପରିବର୍ତ୍ତନ ପାଇଁ ଆଦିବାସୀ ପ୍ରସ୍ତୁତ ହୋଇ ପାରି ନଥିଲେ । ରାଜନୈତିକ ନେତାବୃନ୍ଦ ଶାସନର ପଞ୍ଜୁରୀ ଭିତରେ ରହି ଆଦିବାସୀର ସମସ୍ୟା ବୁଝିବାରେ ଅକ୍ଷମ ହେଲେ । ଆଦିବାସୀ ସ୍କୁଲ ଖୋଲାହେଲା, କିନ୍ତୁ ଶିକ୍ଷକ ଉଦ୍‌ବୁଦ୍ଧ ହୋଇ ପାରିଲେ ନାହିଁ, ଯେଉଁଠାରେ ଶିକ୍ଷକ ନିଷ୍ଠାପର, ସେଠାରେ ଛାତ୍ରମାନେ ସ୍କୁଲକୁ ଆସିବାକୁ ନାରାଜ, ସେମାନଙ୍କୁ ବୁଝାଯାଇ ପାରୁନାହିଁ କାହିଁକି ପାଠ ପଢ଼ିବାକୁ ହେବ,

କାର୍ଯ୍ୟିକ ଆଶ୍ରମ ସ୍କୁଲର ଧନ୍ଦାମୂଳକ ଶିକ୍ଷା ସେମାନେ ପାଇବେ, ମୌଳିକ ତାଲିମ ଦ୍ୱାରା ସେମାନଙ୍କର କି ଲଭ ହେବ । ଖୁବ୍ କମ୍ ଛାତ୍ରଛାତ୍ରୀ ସ୍କୁଲକୁ ଆସିଲେ, ଯେଉଁମାନେ ଆସିଲେ ସେମାନେ ୨।୩ ବର୍ଷ ପରେ ପଢ଼ା ଛାଡ଼ିଦେଲେ, ଶ୍ରେଷ୍ଠ ଚାକିରି ମିଳିଲେ ଚାଲିଗଲେ, ଏବେ ଏକ ଯେଉଁ ଅଳ୍ପ କେତେକ ଛାତ୍ରଛାତ୍ରୀ ମାଟ୍ରିକ୍ ପାଶ୍‌କଲେ ସେମାନେ ଶିକ୍ଷକତା ବା କିରାଣୀ ଚାକିରି କରି ସନ୍ତୁଷ୍ଟ ହେଲେ ।

ରାଜସ୍ୱ ବିଭାଗ ପକ୍ଷରୁ କେତେକ ଉନ୍ନୟନ କାର୍ଯ୍ୟ ହେଉଥିଲା । ଗୋଷ୍ଠୀ ଉନ୍ନୟନ ଯୋଜନା ଆରମ୍ଭ ହେବାରୁ ବି. ଡି. ଓ. ଚାକିରି ଓ ବ୍ଲକ ସୃଷ୍ଟି ହେଲା । ୧୯୫୫ ମସିହାରେ ବିନୋବାଙ୍କ କୋରାପୁଟକୁ ଯିବା ସମୟକୁ ଓଡ଼ିଶା ବ୍ଲକ୍ ପଦ୍ଧତି ଆରମ୍ଭ ହୋଇଗଲାଣି । ଏ ସଂସ୍ଥାଟି ସଂପର୍କରେ ଆଗାମୀ ଅଧ୍ୟାୟରେ ଆଲୋଚନା ହେବ । ସଂକ୍ଷିପ୍ତରେ କହିବାକୁ ଗଲେ ସ୍ୱାଧୀନତା ପରେ ଆଦିବାସୀଙ୍କ ସେବା କରିବାକୁ ବହୁ ସରକାରୀ ଓ ବେସର-କାରୀ ଅନୁଷ୍ଠାନ କାର୍ଯ୍ୟକଲେ, କିନ୍ତୁ ପ୍ରାପ୍ୟ ସମସ୍ତେ ରାସ୍ତା ଭୁଲିଲେ । ସମୀକ୍ଷା କଲେ ଜଣାଯିବ ବିଶ୍ୱନାଥ ମଧ୍ୟ ଇତଃସ୍ତତ ହେଲେ । ସେ ସର୍ବଦା ଆଶାବାଦୀ, ତେଣୁ ପଚାରିଲେ କହନ୍ତି କେହି ସଂପୂର୍ଣ୍ଣ ବିଫଳ ହୋଇ ନାହିଁ ଆଧୁନିକ ଜଗତସହ ପରିଚିତ ନଥିବା ଲୋକଙ୍କ ପାଇଁ ସରକାର ଉଦ୍‌ବେଗ ପ୍ରକାଶ କରିଛନ୍ତି, ବେସର-କାରୀ ଲୋକ କାମ କରିବାକୁ ଆସିଛନ୍ତି, କିଏ ପାଦେ ଯାଇଛି, କିଏ ଅବା ସାତପାଦ ଯାଇ ତାଙ୍କର ବନ୍ଧୁ ହୋଇଛି । ପାଦେ ଯାଇଥିବା ଲୋକକୁ ତ ତା'ର ପ୍ରାପ୍ୟ ଦେବାକୁ ହେବ ।

ଯେଉଁ ପ୍ରାଥମିକ ଶିକ୍ଷକ ଜଙ୍ଗଲର ସମସ୍ତ ଶୋଷକର ପରମ୍ପରା ଧରି ନିବିଡ଼ ଅରଣ୍ୟ ମଧ୍ୟରେ ଆଶ୍ରମ ସ୍କୁଲ କରିବା ନାମରେ

ଲୋକଙ୍କୁ ଠକିଥିଲା, ସେ କ'ଣ କରୁ ଦେଲନାହିଁ ସେ ଲୋକଙ୍କୁ । ଠକିବାର ଫଳ ଆଦିବାସୀ ପାଇବ ନାହିଁ, ପାଇବ ଠକିଥିବା ଲୋକ । ଆଦିବାସୀଙ୍କୁ ଘରପୋଡ଼ରୁ ଯାହା ମିଳିଲା ମିଳୁ । ଏହି ଉଦାର ଓ ବୈଷ୍ଣବବାଦୀ ଦୃଷ୍ଟିଭଙ୍ଗୀ ନେଇ ବିଶ୍ୱନାଥ ସ୍ୱାଧୀନତା ପରବର୍ତ୍ତୀ ସରକାରମାନଙ୍କ ସହ ତୀବ୍ର ବିରୋଧ କଲେ ନାହିଁ । ଯେଉଁଠି ସରକାରଙ୍କ କାମ ମନକୁ ନପାଇଲା ନୀରବ ରହିଗଲେ' ଦୋଷ ଦେଖିବା ନାହିଁ, ସେମାନଙ୍କ ଗୁଣ ଦେଖିବା', ଯାଉଯାଉ କାହାର ସ୍ଖଳନ ଘଟିଛି ହେଉ, ତାହା'ତ ମାନବୀୟ । ହୁଏତ ତାଙ୍କର ସଦ୍‌ବୁଦ୍ଧି ହେବ, ଅତିଶୀଘ୍ର କିଛି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚିବା ଠିକ୍ ହେବ ନାହିଁ । ସରକାରୀ ଲୋକେ ହୁଏତ ବହୁପ୍ରଭାବିତ ହୋଇ ଯିବେ । ଯୁଗଯୁଗ ଧରି ଯେଉଁମାନେ ଶୋଷଣ କରି ଆସିଛନ୍ତି ସେମାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ହେଲେ, ଏହି ନୂତନ ସରକାରୀ ଯନ୍ତ୍ର ମାନଙ୍କୁ ବିରୋଧ କରିବା ଠିକ୍ ହେବନାହିଁ ।

୧୯୫୭ରୁ ୧୯୬୭ ମସୀହା ପର୍ଯ୍ୟନ୍ତ ବିଶ୍ୱନାଥଙ୍କ କାର୍ଯ୍ୟ ସରକାରୀ ଓ ବେସରକାରୀ ଗଠନ ମୂଳକ କାର୍ଯ୍ୟଗୁଡ଼ିକ ସହ ଆଦିବାସୀଙ୍କୁ ପରିଚିତ କରାଇବା ଓ ମୌଳିକ ସମସ୍ୟା ସଂପର୍କରେ ଶୋଷକଗୋଷ୍ଠୀ ବିରୁଦ୍ଧରେ ସତ୍ୟାଗ୍ରହ କରିବାରେ ସୀମାବଦ୍ଧ ଥିଲା । ଏହି ସମନ୍ୱୟଯୁକ୍ତ ପରବର୍ତ୍ତୀ ଯୁଗର ଉଚ୍ଚଶିକ୍ଷିତ ଯୁବକ କର୍ମୀମାନେ ପ୍ରତିକ୍ରିୟା ଶୀଳତାର ଆଖ୍ୟା ଦେଇ ସଂଘର୍ଷର ପଥ ବାଛିନେଲେ । ଏହି ସଂଘର୍ଷପାଇଁ ଦାୟୀ କିଏ ? ବିଶ୍ୱନାଥଙ୍କ ବୈଷ୍ଣବ ମନୋବୃତ୍ତି, ଉଦାର ପନ୍ଥା, ସମନ୍ୱୟବାଦ ନା ଆଦିବାସୀର ଚେତନା ଶୂନ୍ୟତା, ଯୁଗଯୁଗର ସଂଘର୍ଷ ପରେ ବାରମ୍ବାର ପରାଜିତ ହୋଇ ଜଙ୍ଗଲ ଓ ପର୍ବତ ଅଞ୍ଚଳରେ ଆଶ୍ରୟ ନେଇଥିବା ଆଦିବାସୀର ପରାଜୟ ମନୋବୃତ୍ତି ନା ଶୋଷକର ଅବିରତ

ଶୋଷଣ, ମାଠିଆ ଉଚ୍ଛେଦ କରିବାର ସମସ୍ୟା ? ? ? ସେ ତାରିଖରୁ ୧୯୫୫ ମସିହା ପର୍ଯ୍ୟନ୍ତ କୋରାପୁଟରେ ସମାଜସେବୀମାନଙ୍କ ଅଗ୍ରଣୀ ରୂପେ ବିଶ୍ୱନାଥ ରହିଥିଲେ । ପ୍ରଥମ ଅବସ୍ଥାରେ ଖାଦିକାମ ସହ କୃଷି ଓ ସୁଜ୍ ଶ୍ୱେଗ ଚଳାଇ ପ୍ରୌଢ଼ଶିକ୍ଷା, ନିଶା ନିବାରଣ ଓ ଶୋଷଣ ବିରୁଦ୍ଧରେ ଲଢ଼ିବା ପାଇଁ ନୂତନ ଚେତନାରେ ଲୋକଙ୍କୁ ଉଦ୍‌ବୁଦ୍ଧ କରିବା କାର୍ଯ୍ୟକ୍ରମ ହାତକୁ ନିଆଗଲା । ଏହି ସବୁ ଅନୁଷ୍ଠାନରେ ପ୍ରଥମେ ବେଶୀ ସଂଖ୍ୟାରେ ଅଣଆଦିବାସୀ କର୍ମୀ ରହିଲେ । ଆଦିବାସୀ ଝିଅମାନଙ୍କୁ ସାଧାରଣ ପଢ଼ାଲେଖା ଓ ପ୍ରସୂତି ବିଦ୍ୟା ଶିକ୍ଷା ଦିଆଗଲା । ଅନ୍ୟମାନଙ୍କ ଆବଶ୍ୟକ ବେଳେ ସାହାଯ୍ୟ କରିବା ମନୋବୃତ୍ତି ସୃଷ୍ଟି କରାଗଲା । ଏସବୁ ସଂଗଠନ ପାଇଁ ସରକାର ମଧ୍ୟ କିଛି ଗ୍ରାଣ୍ଟ ଦେଲେ, ଲୋକମାନେ ମଧ୍ୟ କିଛି ଚନ୍ଦା ଦେଲେ । କୁଂଜେନ୍ଦ୍ରିରେ ଆଦିବାସୀ କର୍ମୀମାନଙ୍କ ପାଇଁ ଏକ ତାଲିମକେନ୍ଦ୍ର ଖୋଲାଯାଇ ୨ମାସିଆ ଟ୍ରେନିଂ ଦିଆଗଲା,

ମାଳଅପା ଓ କେତକୀ ଦେବୀ ୧୯୪୯ ମସିହାରେ କସ୍ତୁରବା ନିଧିର କର୍ମୀ ଭାବେ ଡୁମୁରିଚେଡ଼ା ଗାଆଁକୁ ନିଜର କର୍ମକ୍ଷେତ୍ର ରୂପେ ବାଛିନେଲେ । ସେଇଦିନୁ ମାଳଅପାଙ୍କର ତପସ୍ୟା ଆରମ୍ଭ ହେଲା ଯୁଗଯୁଗ ପାଇଁ । ଆଜିବି ସେ ସେହି ଘୋର ଜଙ୍ଗଲରେ ନିଜର ଆଶ୍ରମରେ ଅଛନ୍ତି, ଲୋକଙ୍କ କାମ କରିବାକୁ, ଯାହାର କେହି ନାହିଁ ତା'ର ପାଇଁ ସାମାନ୍ୟ କିଛି କରିବାକୁ । ତାଙ୍କୁ ସଭ୍ୟତାର ସାଜ ପିନ୍ଧିଥିବା ମଣିଷ ଦେଖିବାର ଭାଗ୍ୟ ହୁଏନା, କାରଣ ତାଙ୍କର ଆଶ୍ରମ ଗୁଡ଼ିକ ଏପରି ସ୍ଥାନରେ ପ୍ରତିଷ୍ଠିତ ହୋଇଛି ଯେଉଁଠାକୁ ତଥାକଥିତ ସଭ୍ୟମାନଙ୍କ ଯିବା ସମ୍ଭବ ନୁହେଁ । କିନ୍ତୁ ପ୍ରଶ୍ନ ହୁଏ ମାଳଅପା କ'ଣ ସେଇ ଜଙ୍ଗଲ ଭିତରେ ରହସ୍ୟ, ସେ ଏକ ପ୍ରଦୀପ୍ତ ଅଗ୍ନିଶିଖା, କିନ୍ତୁ ସୂର୍ଯ୍ୟ ନୁହନ୍ତି । ତାଙ୍କ ପ୍ରଭାବ ପଡ଼ିଲା କେବଳ କେତେକଜଣଙ୍କ

ଲୋକଙ୍କ ଉପରେ, ସମାଜସେବୀ ଓ ସାଧୁସନ୍ଥଙ୍କ ମଧ୍ୟରେ ସେ ପରି- ଚିତ ହେଲେ । କିନ୍ତୁ କୁଷ୍ଠରୋଗ ଅଞ୍ଚଳରୁ ଅନ୍ଧାର ହଟାଇବା ପାଇଁ ସେ କିଛି କରି ପାରିଲେ ନାହିଁ । ରାୟଗଡ଼ା ସଦରଠାରୁ ୧୫କିଲୋ- ମିଟର ଦୂରରେ ରହିଥିବା ଗାଁ ଟାଖ ଉମୁରି ଜେଡ଼ାରେ ସେ ନିଜର ପ୍ରଥମସେବା କେନ୍ଦ୍ର ସ୍ଥାପନ କଲେ ଭୁମିମାନଗୁଡ଼ା, ଗରଣ୍ଡା, ଝୁମ୍ପାକଣା ଓ ବୋଡ଼ବାଡ଼ ଇତ୍ୟାଦି ଗ୍ରାମରେ ମଧ୍ୟ ସେବା କେନ୍ଦ୍ର ହେଲା । ଯେଉଁଠାରେ ଅନ୍ନପୂର୍ଣ୍ଣା ସାମନ୍ତସାହୁ, ରାଧାମଣି ସାହୁ, ହରିବାଳା ରଣ୍ଡା, ରାଜଶ୍ରୀ ସ୍ୱାଇଁ, ବାସନ୍ତୀ ଦେବୀ ଓ କୃଷ୍ଣପ୍ରିୟାଦେବୀ ଇତ୍ୟାଦି ସେଠି କାର୍ଯ୍ୟ କଲେ । କୃଷ୍ଣପ୍ରିୟା ନିଜର ପରିବାରକୁ ଏହି କୁଷ୍ଠ ସେବା କାର୍ଯ୍ୟରେ ଉତ୍ସର୍ଗ କରିଦେଲେ । ତାଙ୍କ ପୁଅ ଡାକ୍ତର ନିର୍ମଳ ଏବେ ସୁଦ୍ଧା ହାଟବାଡ଼ କୁଷ୍ଠ ଚିକିତ୍ସା କେନ୍ଦ୍ରରେ ସେବା କରନ୍ତି । କିଛିଦିନ ତଳେ ସରକାରଙ୍କ ଆୟୁର୍ବେଦ ଚିକିତ୍ସାର ଡିରେକ୍ଟର ଥିବା ଡ଼ ଭଗବାନ ଦାସ ମଧ୍ୟ ଏହି ସେବା କାର୍ଯ୍ୟ କରିବାକୁ କୋରାପୁଟ ଆସିଥିଲେ ।

ସ୍ୱାସ୍ଥ୍ୟ ସମସ୍ୟା ଅତି ଅପ୍ରୀତିକର ଥାଏ । ଅନେକ ଲୋକ ଯକ୍ଷ୍ମାରୋଗରେ ପଡ଼ିଥାଆନ୍ତି । ଏହି ଯକ୍ଷ୍ମା ରୋଗରେ କୁଷ୍ଠରୋଗ ପରି ଘାଆ ହୋଇଯାଏ, ହାତଗୋଡ଼ ପଙ୍ଗୁ ହୋଇଯାଏ ଓ ବଙ୍କା ହୋଇଯାଏ । ପ୍ରତିକାର ସ୍ୱରୂପ ଅଏଲ ପେନ୍‌ସିଲିନ୍ ଇଂଜେକ୍- ସନ୍ ଓ ଖାଇବାକୁ ଆଇରନ୍ ଟ୍ୟାବ୍‌ଲେଟ୍ ଦିଆଯାଏ । ବିଶୋଧକ ସାହାଯ୍ୟରେ ଘାଆକୁ ନିୟମିତ ଧୋଇବାକୁ ପଡ଼େ । ମାଲକାନଗିରି ଅଞ୍ଚଳରେ ଏହି କାର୍ଯ୍ୟ WHO ପକ୍ଷରୁ ଆରମ୍ଭ ହେଲା ଓ ରାୟଗଡ଼ା ଅଞ୍ଚଳ (ବର୍ତ୍ତମାନର ରାୟଗଡ଼ା ଓ ଗୁଣୁପୁର ସବ୍‌ଡିଭିଜନ୍) ରେ ନବଜୀବନ ମଣ୍ଡଳ ଓ କସ୍ତୁରବା ଗାନ୍ଧୀ ସ୍ମାରକନିଧି ପକ୍ଷରୁ ଏହି ଚିକିତ୍ସା କରାଗଲା । ଯକ୍ଷ୍ମା ରୋଗୀମାନଙ୍କ

ସହ ମିଳାମିଶି ଏହି କାର୍ଯ୍ୟ କରିବାପାଇଁ କଡ୍ରକାନ୍ତି ନିଷ୍ଠା ଆବଶ୍ୟକ ତାହା କରିବା ଲୋକେ ଜାଣିଥିବେ । ନବଜୀବନ ମଣ୍ଡଳ ପକ୍ଷରୁ ସୂର୍ଯ୍ୟମଣି, ହରପ୍ରିୟା ଓ ସତ୍ୟବତୀ ଇତ୍ୟାଦି ଏଥିପାଇଁ କର୍ମୀ ରହିଲେ । ଅଭିଜ୍ଞତାରୁ ଜଣାଗଲା, ସେବା କାର୍ଯ୍ୟରେ ନାରୀକର୍ମୀ-ମାନେ ପୁରୁଷ ମାନଙ୍କଠାରୁ ଅଧିକ ସ୍ଥିରତାର ସହ କାର୍ଯ୍ୟ କଲେ । କାର୍ଯ୍ୟର ସମନ୍ୱୟ ରକ୍ଷାକଲେ ବିଶ୍ୱନାଥ । କର୍ମୀ ଓ ରୋଗୀମାନେ ହେଲେ ବିଶ୍ୱନାଥଙ୍କ ଗଉରବ ର । କ୍ରମେ ପୂଜ୍ ରୋଗ କୋରାପୁଟରୁ ଦୂରେଇଗଲା । ସେତିକିବେଳେ ନବଜୀବନ ମଣ୍ଡଳ ପକ୍ଷରୁ କୈଳାସ କୋଠା ପାଖ କୋରଙ୍ଗପାଇ, ମୁରୁଗୁଲା, ହାଟମ କଟକ ପାଖ ଜାମୁଗୁଡ଼ା, ପଜରଗୁଡ଼ା ଓ ପୁଟ୍ରୁ ଗୁଡ଼ାରେ ପୂଜ ସେବାକେନ୍ଦ୍ର ହେଲା । କପୁରବା ଜିଲ୍ଲାର ଜାମିଣୀ ଓ କଲ୍ୟାଣ ସିଂହପୁରରେ ପୂଜ୍ ସେବାକେନ୍ଦ୍ର ହେଲା ।

ସର୍ବଭାରତୀୟ କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କ ମହାପ୍ରୟାଣ ପରେ ଭାରତର ରଚନାତ୍ମକ କର୍ମୀ, ଦାର୍ଶନିକ ଓ ଶାସକମାନେ ଭାରତର ଭବିଷ୍ୟତ କାର୍ଯ୍ୟକ୍ରମ ସଂପର୍କରେ ଆଲୋଚନା କରିବାପାଇଁ ସମ୍ମିଳିତ ହୋଇ-ଥିଲେ । ଓଡ଼ିଶାରୁ ଆଚାର୍ଯ୍ୟ ମହାଶୟ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ଡାଃ ହରେକୃଷ୍ଣ ମହତାବଙ୍କ ଠାରୁ ଆରମ୍ଭ କରି ଗୋକୁଳାନନ୍ଦ ମହାନ୍ତି, ଈଶ୍ୱରଲାଲ ବ୍ୟାସ, ପୂରୁବାଇ, ବିଶ୍ୱନାଥ ପଟ୍ଟନାୟକ, ଅଲେଖ ପାତ୍ର ଓ ଗୋଲକ ଦାସ ଇତ୍ୟାଦି ଏହି ସମ୍ମି-ଳନୀରେ ଯୋଗଦେଲେ । ସମସ୍ତ ରଚନାତ୍ମକ କର୍ମୀମାନେ ଏକ ଅନୁଷ୍ଠାନ ହେବ ବୋଲି ଏଠାରେ ସ୍ଥିର ହେଲା । ଶାସକ ବର୍ଗ ରଚନାତ୍ମକ କର୍ମୀମାନଙ୍କୁ ସମ୍ମାନଦେଖାଇଲେ ମଧ୍ୟ ମତ ପ୍ରକାଶକଲେ ଯେ ଶାସନ କ୍ଷେତ୍ରରେ ଗାନ୍ଧୀବାଦର ସଂପୂର୍ଣ୍ଣ ଅନୁସରଣ କରିବା କଷ୍ଟକର ହେଉଛି । ତା’ ପରବର୍ଷ ଇନ୍ଦୋର ପାଖରେ ଏକ ଗ୍ରାମର ଏହି କର୍ମୀ ସମ୍ମିଳନୀ ହେଲା । ସେଠାକୁ ଶାସକ ବର୍ଗ ଯାଇନଥିଲେ ।

ରଚନାତ୍ମକ କର୍ମୀମାନଙ୍କୁ ପରାମର୍ଶ ଦେବାର ଦାୟିତ୍ୱ ପଡ଼ିଲା ବିନୋବା ଭାବେଙ୍କ ଉପରେ । ତା ପରବର୍ତ୍ତୀ ସମ୍ମିଳନୀ ଓଡ଼ିଶାରେ କରାଯାଉ ବୋଲି ଗୋପବାବୁ ପ୍ରସ୍ତାବ କଲେ ଓ ସେ ପ୍ରସ୍ତାବ ଗୃହୀତ ହୋଇଗଲା ।

୧୯୫୦ ମସିହା ଆରମ୍ଭରେ ଏହି ସର୍ବୋଦୟ ସମାଜର ବୈଠକ ଅନୁଗୁଳଠାରେ ଅନୁଷ୍ଠିତ ହେଲା । ଆଶ୍ଚର୍ଯ୍ୟ ହେଉଛି, ଗୋପବାବୁ ଓ ରମାଦେବୀ ଏହି ସମ୍ମିଳନୀର ଉଦ୍ଦେଶ୍ୟ ପ୍ରଚାର କରିବା ପାଇଁ ଓ ଚାନ୍ଦା ସଂଗ୍ରହ କରିବା ପାଇଁ ଓଡ଼ିଶାର ବିଭିନ୍ନ ଅଞ୍ଚଳ ଗସ୍ତ କଲେ ୧୯୪୯ ମସିହାର ଦ୍ୱିତୀୟାର୍ଦ୍ଧରେ । ସେହି ଅବସରରେ ସେମାନେ କୋରାପୁଟ ଜିଲ୍ଲା ଗସ୍ତ କରିଥିଲେ । ବିଶ୍ୱନାଥ ଗୁଣୁପୁର ଅଞ୍ଚଳରୁ ୨୦।୨୫ଜଣ ସ୍ୱେଚ୍ଛାସେବୀଙ୍କୁ ନେଇ ପ୍ରାୟ ୧ମାସ କାଳ ଅନୁଗୁଳରେ ରହିଲେ । ସମ୍ମିଳନୀ ପରେ ମଧ୍ୟ ଶିବିରର ଅସ୍ଥାୟୀ ଗୃହ ଇତ୍ୟାଦି ଭଙ୍ଗାଭଙ୍ଗି କରିବାର ଦାୟିତ୍ୱରେ ୧ମାସ ସମୟ ଦେଇ ସେ କୁଜେନ୍ଦ୍ରୀ ଫେରିଲେ । ଫସଲ ଅମଳ ସରିଥାଏ । କିନ୍ତୁ ଚାରିଆଡ଼େ ହାହାକାର, କାରଣ ବର୍ଷା ଅଭାବରୁ ରାୟଗଡ଼ା ସବ୍‌ଡିଭିଜନ୍‌ର ପ୍ରାୟ ସମସ୍ତ ଅଞ୍ଚଳରେ ମରୁଡ଼ି ହୋଇଥାଏ । ବିଶ୍ୱନାଥ ଏ ବିଷୟରେ ନିଜର ସହକର୍ମୀ ଓ ପରାମର୍ଶଦାତା ମାନଙ୍କୁ ଜଣାଇଲେ । ବ୍ୟାସଜୀଙ୍କୁ ଦୁର୍ଭିକ୍ଷ ସାହାଯ୍ୟ କାମପାଇଁ କୁଜେନ୍ଦ୍ରୀରେ ରଖାଗଲା । ଗୁଣୁପୁରକୁ ରିଲିଫ ପଦାର୍ଥ ଅଣାଗଲା । ଗୋପବାବୁ ରିଲିଫ୍ ଭୋଜନକେନ୍ଦ୍ର ପାଇଁ ଚାନ୍ଦା ଆଦାୟ କରି ପଠାଇଲେ । କିନ୍ତୁ ସ୍ଥାୟୀ ଗଠନମୂଳକ କାର୍ଯ୍ୟ ଏହି ମରୁଡ଼ି ପାଇଁ କିଛିଦିନ ବାଧାପ୍ରାପ୍ତ ହେଲା । ସରକାରୀ ରିଲିଫ କାର୍ଯ୍ୟକଲା ବେଳେ ସ୍ୱେଚ୍ଛାସେବୀ ସଂଗଠନ ମାନଙ୍କର ସହଯୋଗ ନେଲେ ।

ବିଶ୍ୱନାଥ ଅନୁଭବ କଲେ ସତେ ଯେମିତି ସେ ଭୁଆଁ

ବୁଲି ଯାଇଛନ୍ତି ୧୯୪୭ରୁ୧୯୫୧ ମସିହା ପର୍ଯ୍ୟନ୍ତ । କାହିଁ ରାସ୍ତା, କାହିଁ ଜୀବନ, ଆଦିବାସୀଙ୍କ ସମସ୍ୟା ସହ ସରକାରଙ୍କ ସଂପର୍କେ କ'ଣ ଏକ ସମାନ୍ତର ସରଳ ରେଖା ? କେଉଁଠି ମିଳିବାର ସୁଯୋଗ ନାହିଁ ? ଆଦିବାସୀ କହୁଛି, ମୋର ଜମି ଅଣଆଦିବାସୀ ନେଇ-ଯାଇଛି, ମୁଁ ଏଠି ଦିନେ ରାଜାଥିଲି । ଜମିଟିକ ମୋର ଥିଲି । ଆଜି ମୁଁ ସମସ୍ତଙ୍କ ପାଖେ ମୁଣ୍ଡ ନୁଆଁଇ ବୁଲୁଛି । ବିଶ୍ୱନାଥ କ'ଣ ତା'ର ମୂକ ସାକ୍ଷୀ ହେବା ପାଇଁ ଅନ୍ୟାୟର ପକ୍ଷ ସମର୍ଥନ କରିବାକୁ ଆସିଥିଲେ ?

ଏହି ଚିନ୍ତାରେ ତାଙ୍କର ଦିନଦିନ, ରାତିରାତି ବିତିଗଲା । ଗୋଟିଏ ପଟରେ ଦୁର୍ଭିକ୍ଷ, ଅନ୍ୟ ପଟରେ ଅର୍ଥନୈତିକ ଶୋଷଣ । ସେ ସ୍ଥିର କଲେ ଦିନକୁ ଦୁଇଓଳି ଖାଇବା ଠିକ୍ ହେବନାହିଁ । ସାଧାରଣ ଲୋକେ ଓଳିଏ ଖାଇବାକୁ ପାଉନାହାନ୍ତି, ଯୋଗୀ ଋଷିମାନେ ତ ବହୁଦିନ ନଖାଇ ନପିଇ ରହିପାରନ୍ତି ବୋଲି ଶୁଣିଥିଲେ । ତେଣୁ ସେ ଦିନରେ ଗୋଟିଏ ବେଳ ଖାଆନ୍ତି ମଧ୍ୟାହ୍ନ ସମୟରେ । ରାତି-ଖାଇବା ସେହିଦିନଠୁ ତାଙ୍କର ସବୁଦିନ ପାଇଁ ବନ୍ଦହେଲା । ସକାଳେ ଛତୁ, ମୁଢ଼ି ବା ଅନ୍ୟକିଛି ଜଳଖିଆ କେହି ଦେଲେ ଖାଆନ୍ତି, ନହେଲେ ସେହି ମଧ୍ୟାହ୍ନ ଭୋଜନ । ଆଦିବାସୀ ଦିଖାରିଆ ଚନ୍ଦ୍ରା-ରାଜ୍ୟରେ ବୁଢ଼ା ସେ ପାଗଯୋଗକୁ ଅନେଇ ଥାଆନ୍ତି ଲୋକଙ୍କୁ କଣ କହିବେ ।

ଯାହା ଗାଆଁ ଗଣ୍ଡାରେ ଦେଖିଲେ, ଯାହା ଆଦିବାସୀଙ୍କ ଠାରୁ ଶୁଣିଲେ ସବୁକୁ ଯୋଡ଼ିଲେ । ପାଖ ମାନ୍ଦ୍ରାଜ ପ୍ରଦେଶର ତେଲଙ୍ଗାନାରେ ଆରମ୍ଭ ହୋଇଥିବା କମ୍ୟୁନିଷ୍ଟ ମାନଙ୍କ ଆନ୍ଦୋଳନ କଥାକୁ ମଧ୍ୟ ତାହା ସହ ଯୋଡ଼ିଲେ । ସବା ଉପରେ ଗାନ୍ଧୀମହାତ୍ମା,

ସତ୍ୟ, ଅହିଂସା, ଏଣ୍ଡି ପୋକ ପ୍ରଜାପତି ହୋଇ ବାହାରିଲା ପରି ଯେ ଏହି ତନ୍ଦ୍ରା ରାଜ୍ୟରୁ ବାହାରି ଆସିଲେ ଏକ ଗାନ୍ଧୀବାଦୀ ଅହିଂସ ସମାଜବାଦୀରୂପେ ଆଦିବାସୀଙ୍କୁ ଅର୍ଥନୈତିକ ଶୋଷଣରୁ ମୁକ୍ତ କରିବାକୁ । ସେପରି ରୂପ ତାଙ୍କର ଅନ୍ତରର ଓ ବାହାରର । ଅହିଂସ ସର୍ବୋଦୟ ନେତାଙ୍କଠାରୁ ନକସଲ ପନ୍ଥୀମାନେ ତାଙ୍କୁ ଏଥିପାଇଁ ଭଲ ପାଆନ୍ତି । ଆଦିବାସୀମାନେ ନିଜ ଲୋକ ବୋଲି ଭାବନ୍ତି । ବିଶ୍ୱନାଥ ତନ୍ଦ୍ରା ଭଙ୍ଗପରେ ଲୋକଙ୍କୁ କହିଲେ ଅର୍ଥନୈତିକ ଶୋଷଣରୁ ମୁକ୍ତ ହେବାପାଇଁ ନିଜେ ପ୍ରସ୍ତୁତ ହୁଅ, ସ୍ୱର ଉତ୍ତୋଳନ କର । ତୁମ ପାଇଁ ଅନ୍ୟ କେହି କହନ୍ତୁ ଅବା ନ କହନ୍ତୁ, ତୁମେ ନିଜେ କୁହ ।

# କୋରାପୁଟ ଆଦିବାସୀଙ୍କ ଭୂସମସ୍ୟା ଓ ତା'ର ପ୍ରତିକାର

୧୯୫୧ ମସିହା ଅପ୍ରେଲ ୧୮ ତାରିଖରେ ଅହିଂସ ଭୂମି ବିପ୍ଳବ ଭୂଦାନ ଆରମ୍ଭ ହେଲା । ତା'ର କିଛିଦିନ ପରେ ଗୁଣୁପୁରରେ ବିଶ୍ୱନାଥ ପଟ୍ଟନାୟକ ଭୂସତ୍ୟାଗ୍ରହ ଆରମ୍ଭ କରିଥିଲେ । ଏ ରୋଗକୁ ଠିକ୍ ଭାବେ ଚିହ୍ନିଥିଲେ, ତାଙ୍କର ଗୁରୁ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀ ମଧ୍ୟ ଜାଣିଥିଲେ କୋରାପୁଟର ସମସ୍ୟା ଆଦିବାସୀ ଅଣ ଆଦିବାସୀଙ୍କର ନୁହେଁ । ସେ ଲେଖିଥିଲେ "ଏ ଅଞ୍ଚଳର କର୍ମୀମାନେ ଭୁଲି ବୁଝିଛନ୍ତି ।" ଏଠାକାର ପ୍ରଶ୍ନ—(୧) ଆଦିବାସୀ ଅଣଆଦି-ବାସୀ ନୁହେଁ । ଆଦିବାସୀ ଲୋକ ବା ଆଦିବାସୀ ଲୋକଙ୍କ ଉପରେ ଜୁଲମ କରୁଛନ୍ତି । ଏହା ଧନୀ ଦରିଦ୍ର ପ୍ରଶ୍ନ । ଏହା ଟଙ୍କା ଦେଖାର ସଇତାନି ଲୀଳା । (୨) ଏଥିରେ କେବଳ କୁମୁଟି ଦୋଷୀ ନୁହନ୍ତି । ତେଲଙ୍ଗା ଓଡ଼ିଆ ପ୍ରଶ୍ନ ଏଠି ନାହିଁ । ବହୁତ ଓଡ଼ିଆ ଏ ସଂପର୍କରେ ଦୋଷୀ (୩) ଆଦିବାସୀଙ୍କ ଅପହୃତ ଜମି ଫେରେଇ ଦେବା ଯେଉଁ ଆଇନ ଉପରେ ନିର୍ଭର କରୁଛି ସେ ଆଇନରେ ଫାଙ୍କି ଦେବାର ବହୁତ ବାଟ ଅଛି । ସେ ଆଇନଠାରୁ ବଳି ଅଧିକ ଜୋରଦାର ଆଇନ୍ ଦରକାର । ନ ଠକେଇ, ଜମି କିଣିନେଇ ଯେ ଲୋକ ବେଶୀ ଜମି ଜମା କରୁଛି ଏବଂ ତା' ଫଳରେ ସାଇପଡ଼ିଶା ଲୋକ ଉପାସ ପଡ଼ୁଛନ୍ତି, ସେ ଲୋକ ମଧ୍ୟ ଚୋର ଠକ । ଏ ଅପ୍ରିୟ ସତ ଶିକ୍ଷିତ ଓ ଧନୀଲୋକେ ବର୍ତ୍ତମାନ ସ୍ୱୀକାର କରିବାକୁ ନାରାଜ । ତାକୁ ସ୍ୱୀକାର କଲାଭଳି ଆଇନ ଓ ଶାସନ ମଧ୍ୟ ଆବଶ୍ୟକ ।

ତଥାପି ଗୋପବାବୁ ବିଶ୍ୱନାଥଙ୍କୁ ଭୂସତ୍ୟାଗ୍ରହ କରିବାକୁ ଉତ୍ସାହିତ କରିନଥିଲେ । ରଚନାତ୍ମକ କର୍ମୀମାନେ ଗାନ୍ଧିଜୀଙ୍କ ମହା-

ପ୍ରୟାଣ ପରଠାରୁ ୩ବର୍ଷକାଳ ନୂତନ ଗନ୍ତପଥ ଓ ନେତା ଖୋଜି-
ବାରେ ବ୍ୟସ୍ତଥିଲେ । କେତେକ ତତ୍କାଳୀନ ସରକାରଙ୍କୁ ସମର୍ଥନ
କରି ସରକାରୀ କାମରେ ଜଡ଼ିତ ହେଲେ । କେଏ ଜିଲ୍ଲାବୋର୍ଡ଼,
ଲୋକାଲ ବୋର୍ଡ଼, ସମବାୟ ସମିତି ଓ ସ୍କୁଲ ପରିଚାଳନା କମିଟିରେ
କର୍ମକର୍ତ୍ତା ହୋଇ ରହିଲେ, ଅନ୍ୟ କେତେକ ଏସବୁ ସଂଗଠନରେ
ପଶି ଦେଶ ଗଠନକୁ ଅସମ୍ମାନ ଜନକ ମନେ କଲେ, କାରଣ
ସ୍କୁଲକୁ ଯଦି ଚରିତ୍ରବାନ ଶିକ୍ଷକ ନ ଆସିଲେ ତେବେ ସମ୍ପାଦକ
ଦୁର୍ନାମ ପାଇଲେ । କିନ୍ତୁ ଭଲ ଶିକ୍ଷକ ମିଳିବା ସବୁବେଳେ ସମ୍ଭବ
ନୁହେଁ ଶିକ୍ଷକ ସଂଖ୍ୟା କମିଗଲେ ସରକାରୀ ଗ୍ରାଣ୍ଟ ମିଳିବ ନାହିଁ ।

ସାହାହେଉ ମହାତ୍ମାଗାନ୍ଧୀଙ୍କ ମହାପ୍ରୟାଣ ଦିନଠାରୁ ତେଲଙ୍ଗାନା ଆନ୍ଦୋଳନ ପର୍ଯ୍ୟନ୍ତ ୩ବର୍ଷକାଳ ଭାରତୀୟ ରଚନାତ୍ମକ କର୍ମୀମାନେ ଯଥେଷ୍ଟ ନେତୃତ୍ୱ ଦେଇ ନପାରିବାରୁ ହିଂସାର ଦର୍ଶନ ଲୋକଙ୍କ ମଧ୍ୟରେ ପ୍ରସ୍ଫୁରିତ ହୋଇପାରିଲା । ଧନୀଦରିଦ୍ର ପ୍ରଶ୍ନ ଉପରେ କେତେଜଣ କମ୍ୟୁନିଷ୍ଟ ତେଲେଙ୍ଗାନା ଅଞ୍ଚଳରେ ସ୍ଥିର ପୋଖରୀରେ ଢେଲଟିଏ ପକାଇ ଦେଲେ । ୧୯୪୮ ମସିହା ପ୍ରଥମାର୍ଦ୍ଧରେ ରଚନାତ୍ମକ କର୍ମୀମାନେ ସେବାଗ୍ରାମଠାରେ ଏକତ୍ର ହୋଇ କାର୍ଯ୍ୟ ପ୍ରଣାଳୀ ନିର୍ଦ୍ଧାରଣ କରିନଥିଲେ । ଗାନ୍ଧୀଜୀ ଅଠର ପ୍ରକାର ରଚନାତ୍ମକ କାମ ସମ୍ପର୍କରେ ଦିଗ୍‌ଦର୍ଶନ ଦେଇଥିଲେ । ତନ୍ମଧ୍ୟରେ ଆର୍ଥିକ ସମାନତା ଆଣିବାର ଲକ୍ଷ୍ୟ ମଧ୍ୟ ଥିଲା । କିନ୍ତୁ ୧୯୫୧ ମସିହା ପର୍ଯ୍ୟନ୍ତ ସେ ଦିଗରେ କିଛି ଦୃଢ଼ ପଦକ୍ଷେପ ନିଆଗଲା ନାହିଁ । ସେ ବର୍ଷ ଅପ୍ରେଲ ୧୮ ତାରିଖରେ ବିନୋବା ଭାବେଙ୍କୁ ତେଲେଙ୍ଗାନାର ପୋଚମ୍‌ପଲ୍ଲୀ ଗ୍ରାମର ରାମଚନ୍ଦ୍ର ରେଡ଼ି ଦେଖାଇ ଦେଲେ ଯେ ଅହିଂସ ଉପାୟରେ ଆର୍ଥିକ ସମାନତା ପାଇଁ ଚେଷ୍ଟା କରାଯାଇ ପାରେ । ତା ପୂର୍ବରୁ ଭାରତର ରଚନାତ୍ମକ କର୍ମୀମାନେ

୧୯୪୯ ମସିହାରେ ଇନ୍ଦୋର ନିକଟସ୍ଥ ରାଉଠାରେ ଓ ୧୯୫୦ ମସିହାରେ ଓଡ଼ିଶାର ଅନୁଗୁଳଠାରେ ଏକତ୍ର ହୋଇଥିଲେ। ଅନୁଗୁଳକୁ ବିନୋବା ଆସିନଥିଲେ। ତା ପରବର୍ଷ ହାଇଦ୍ରାବାଦ ନିକଟସ୍ଥ ଶିବରାମପଲ୍ଲୀରେ ହେଉଥିବା ସମ୍ମିଳନୀରେ ଯୋଗଦେବାକୁ ବିନୋବାଙ୍କୁ ଅନୁରୋଧ କରାଗଲା। ସେ ତେଲେଙ୍ଗାନା ଅଞ୍ଚଳରେ ପଦଯାତ୍ରା କରି ଶିବରାମପଲ୍ଲୀ ଯିବେ ବୋଲି ସ୍ଥିର କଲେ।

ଗାନ୍ଧୀଜୀଙ୍କ ପରେ ସ୍ୱାଧୀନତା ପାଇଥିବା ଭାରତର ସାମ୍ୟ ଅହିଂସାବାଦୀ ସରକାର ଶାସକ ବର୍ଗ ଓ ରଚନାତ୍ମକ କର୍ମୀମାନେ ଏହି ତେଲେଙ୍ଗାନାର ଚହଳ ପାଣିରୁ ଅନେକ କଥା ଶିଖିଲେ। ଭୂମିହୀନ ଓ ଭୂମିବାନ୍ ଲୋକଙ୍କ ମନ ମିଶିବା ଦରକାର ହେଲେ ମଧ୍ୟ ତାହା ଇତିହାସର ନିର୍ଦ୍ଦେଶ ଥିଲା। କମ୍ୟୁନିଷ୍ଟମାନେ ତେଲେଙ୍ଗାନାରେ ନିଜର ଦୃଢ଼ମତ ଉପସ୍ଥାପନ କଲେ। ସେମାନେ ଭାରତର ସାମାଜିକ ପରିବେଶ ସମ୍ପର୍କରେ ସମ୍ପୂର୍ଣ୍ଣ ସଚେତନ ନଥିଲେ ମଧ୍ୟ କହିଲେ ଯେ ହିଂସା ଅହିଂସାର ସ୍ୱତନ୍ତ୍ର ଊର୍ଦ୍ଧ୍ୱରେ ନିର୍ଭର ନକରି ଜମିଚାଷ କରୁଥିବା ଗରିବ ଚାଷୀ ମୂଲିଆ ଜମିର ମାଲିକାନା ହାତକୁ ନେବ। କଥାଟି ଅଯଥା ବା ଅଯୌକ୍ତିକ ନୁହେଁ। କିନ୍ତୁ ହିଂସାକାଣ୍ଡ କଲେ କରିବ, ସେଥିପାଇଁ ସେ ମାନସିକ ଓ ଶାରୀରିକ ଭାବେ ପ୍ରସ୍ତୁତ ହୋଇଛି କି, ହିଂସାକାଣ୍ଡ କରୁଥିବା ଶୋଷିତ ଶାସକର ଦାୟିତ୍ୱ କଣ, ଯେବେ ହିଂସାକାଣ୍ଡ ହେବ ଜମିମାଲିକଙ୍କୁ ଶାସକ ଜାତିକ ଧନ-ଜୀବନର ନିରାପତ୍ତା ଦେବେ ନାହିଁ, କେତେଲୋକ ହିଂସାଦ୍ୱାରା କ୍ଷତିଗ୍ରସ୍ତ ହେବେ, ହିଂସା ବିନା ଏହା ସମ୍ଭବ କି ନୁହେଁ, ଏସବୁ ବିଷୟରେ କମ୍ୟୁନିଷ୍ଟ ମାନଙ୍କର କୌଣସି ଜବାବ ନଥିଲା। ବିନୋବାଙ୍କ ପଦଯାତ୍ରା ବେଳେ ରାମଚନ୍ଦ୍ର ରେଡ୍ଡି ଘୋଷଣା କରିଥିଲେ ଭୂମିହୀନ ହରିଜନ ମାନଙ୍କୁ କିଛି ଜମି ଦେବାକୁ ତାଙ୍କ ବାପାଙ୍କର ଇଚ୍ଛାଥିଲା।

ସେହି ପଦଯାତ୍ରାରେ ସନ୍ଥ ବିନୋବାଙ୍କ ଆଗମନ ଅବସରରେ ସେ ୧୦୦ ଏକର ଜମି ଗରିବ ଲୋକଙ୍କୁ ଦେଇଦେବେ । ଏହାହିଁ ଭୂଦାନଯଜ୍ଞର ପ୍ରଥମ ଅଗ୍ନିଶିଖା ।

ବିଶ୍ୱନାଥ ଘର୍ଘର ଶାସ୍ତ୍ରକୁ ଭଲ ଭାବରେ ସେ ଆଦିବାସୀମାନେ ସାମ୍ୟବାଦର ସମର୍ଥକ ହୁଅନ୍ତୁ ଅଥବା ନ ହୁଅନ୍ତୁ ନିଜକୁ ଶୋଷଣମୂଳକ କରିବାକୁ ସେମାନେ ଆନ୍ଦୋଳନ କରିବେ । ତେଲେଙ୍ଗାନାର କମ୍ୟୁନିଷ୍ଟ ଆନ୍ଦୋଳନ ଓ ବିନୋବା ଭାବେଙ୍କର ନୂତନ ସମାଧାନ ପନ୍ଥାର ସମନ୍ୱୟ କରି ବିଶ୍ୱନାଥ ଆରମ୍ଭ କଲେ ଭୂମିସତ୍ୟାଗ୍ରହ । ଏହି ଅହିଂସ ଆନ୍ଦୋଳନ ସମ୍ପର୍କରେ ସେ ନିଜର ଗୁରୁ ଗୋପବନ୍ଧୁ ଚୌଧୁରୀଙ୍କୁ ଲେଖିଲେ । କିନ୍ତୁ କିଛି ଉତ୍ତର ମିଳିଲା ନାହିଁ । ଉତ୍ତର ଅପେକ୍ଷାରେ ନରହି ସେ ଗାଆଁ ଗାଆଁ ବୁଲି ଲାଗିଲେ । ୩୦।୩୫ଖଣ୍ଡ ଗାଆଁର ଲୋକଙ୍କୁ ନେଇ ଏକ କମିଟି ଗଠନ କରାଗଲା । ଜଙ୍ଗଲ ଅଞ୍ଚଳର ମୁଣ୍ଡିଆ ଭୂମିହୀନ ଆଦିବାସୀ ଲୋକଙ୍କ ମଧ୍ୟରେ ପରାମର୍ଶ ହେଲା । ଆଦିବାସୀମାନେ ବିଶ୍ୱନାଥଙ୍କ ସହ ଖୋଲଖୋଲି ଆଲୋଚନା କରନ୍ତି । ଏଠାରେ ଆଦିବାସୀଙ୍କ ଚଳଣୀ ସମ୍ପର୍କରେ ଏକ ବିଶେଷତ୍ୱ ଦେଖିବାକୁ ମିଳେ । ସାଧାରଣତଃ ଆଦିବାସୀମାନେ ଅଣଆଦିବାସୀ ମାନଙ୍କ ସହ ମନଖୋଲା କଥାବାର୍ତ୍ତା ହୁଅନ୍ତି ନାହିଁ । ସରକାରୀ କର୍ମଚାରୀ ମାନଙ୍କ ସହ ସେମାନେ ପ୍ରାୟ କଥାବାର୍ତ୍ତା ହୁଅନ୍ତି ନାହିଁ । କର୍ମଚାରୀମାନେ ଯେବେ ଯେଉଁ ମତଲବ୍ ଉଦ୍ଦେଶ୍ୟରେ ସେ ଆଦିବାସୀ ପାଖକୁ ଆସିଥାନ୍ତି, ଆଦିବାସୀକୁ ଦେଖିଲା ମାତ୍ରେ ସେ ସେହିକଥା ଜାଣିଦେବ ଓ ତା'ର ମତାମତ ଜାଣିନେବେ । କିନ୍ତୁ ସେମାନେ ଆଦିବାସୀର ତାତ୍କାଳିକ ମାନସିକ ଅବସ୍ଥା ସମ୍ପର୍କରେ କିଛି ଜାଣିବାକୁ ପ୍ରୟାସ କରନ୍ତି ନାହିଁ । ସେତେ-ବେଳେ ଆଦିବାସୀର ମନ ହୁଏତ ଅନ୍ୟଆଡ଼େ, ସେ ଭାବୁଥାଏ ନିଜ

ପୁଅ ଘରେ ଭୟଙ୍କର ବେମାର ପଡ଼ିଛି । ହୁଏତ ତାକୁ ଭୂତ ଲଗିଛି କି କେହି ଚାଙ୍ଗି ଦେଇଛି (ମନ୍ତ୍ରକରି ଦେଇଛି) କିଏ ବା ବାହାଘର କାହାସାଙ୍ଗରେ ହେବ, କ୍ଷେତରୁ ଏଥର କେମିତି ଫସଲ ଆମଦାନି ହେବ । ସେହି ପରିବେଶରେ ପ୍ରୌଢଶିକ୍ଷା, ଗ୍ରାମ ସଫେଇ, ଜାପାନୀ ପ୍ରଣାଳୀରେ ଧାନଚାଷ ଇତ୍ୟାଦି କଥା ଆଲୋଚନା କରାଯାଇ ପାରେ କି ?

କିନ୍ତୁ ବିଶ୍ୱନାଥଙ୍କ କାର୍ଯ୍ୟ ପ୍ରଣାଳୀ ଭିନ୍ନ । ସେ କୌଣସି ଆଦିବାସୀ ମଣ୍ଡଳୀରେ ତରବର ହୋଇ କିଛି କହିବାକୁ ଚାହାନ୍ତି ନାହିଁ । ସେମାନଙ୍କର ସମସ୍ୟା ସମ୍ପର୍କରେ ଡଳବଳ ପଚାରନ୍ତି, ପଚାରିଲେ ବିଶ୍ୱନାଥ ଉତ୍ତର ଦିଅନ୍ତି "ମୋର ଆଉ ଉଦ୍ଦେଶ୍ୟ କ'ଣ ? ସେମାନଙ୍କ ସମସ୍ୟା ସମାଧାନ କରିବା ତ ମୋର କାମ । ତେଣୁ ମୁଁ ମୋ କଥା ତାଙ୍କ ଆଗରୁ ଆରମ୍ଭ ନକରି ତାଙ୍କ କଥା ଶୁଣେ । ତାଙ୍କର ପିଲା ବେମାର ଥିଲେ, ତାକୁ ଆଗ ଔଷଧ ଦିଆଯାଉ ତ । ୨ଦିନପରେ ପିଲା ଭଲହେଲା ଅବସ୍ଥାରେ ସେ ମୋ କଥା ଶୁଣିପାରେ, ସେ ହୁଏତ ପଚାରିପାରେ, 'ଆଜ୍ଞା ତୁ କୁଆଡ଼େ ଆସିଥିଲୁ, ଆଜ୍ଞା ଆମେ କ'ଣ କରିବୁ ? ନହେଲେ ମୋ କଥା ଶୁଣିବା ପରେ କହିବ, ଆଜି ହୋଇ ପାରିବ ନାହିଁ, ଆଉ ୫ ଦିନ ପରେ ମୁଁ ସମୟ ଦେବି ।'

ଯେଉଁ ଲୋକ ନିଜ ଦୃଷ୍ଟି କୋଣରୁ ଦେଖେ, ତାକୁ ସେ ହଇ ହଇ ଛତ ଛତ କହି ଜଣାଣ ଭେଟି ଦେଇ ବିଦା କରିଦିଏ, "ବାବୁ ତୋପରି ଅନେକ ଲୋକ ଅନେକ ପ୍ରତିଶ୍ରୁତି ଦେଇ ଯାଇଛନ୍ତି, ଶହେ କଥା କହିଛନ୍ତି ଗୋଟିଏ କାମ କରିଛନ୍ତି, ମୋର ନିଜର ସମସ୍ୟା ଅଛି । ତୁ ତ ମୋ ସମସ୍ୟା ବିଷୟରେ ସଚେତନ ନୁହେଁ, ମୁଁ କାହିଁକି ତୋ ପିଛା ସମୟ ଦେବି ? କୌଣସି ପ୍ରକାର ତୁ ବିଦା

ହୋଇ ଯାଅ, ତୋର ଏ ସ୍ୱପ୍ନ ଉପଦେଶ ମୁଁ ଶୁଣିଲି, ଯାହାଫଳ ହେବ ସେଥିପାଇଁ ମୁଁ ଅପେକ୍ଷା କରୁଛି । ତେଣୁ ମୁଁ କହିଲି ହଇହଇ ଚଳଚଳ ।' ତଥା କଥିତ ସ୍ୱଳ୍ପକ ଲୋକ ସ୍ୱଭାବ ଆଦିବାସୀ ବୋକା କଥା ବୁଝିପାରୁ ନାହିଁ, ଖାଲି କହୁଛି; ହଁ, ହଁ, ତୋ କଥା ଠିକ୍ ।

ବିଶ୍ୱନାଥ ଅନେକ ସମୟରେ ଭାବନ୍ତି, ୧୯୨୮ ମସିହାରେ ପ୍ରଥମ ରେଗୁଲେସନ କରି ସରକାର ଆଦିବାସୀଙ୍କ ସ୍ୱାର୍ଥରକ୍ଷା କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ତାକୁ କାର୍ଯ୍ୟକାରୀ କରାଇବା ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଜୟପୁର ଜମିଦାରୀର ଲୋକ ଓ କେତେକ ବାହାରୁ ଆସିଥିବା ସରକାରୀ କର୍ମଚାରୀ ଯେଉଁମାନେ ଆଦିବାସୀଙ୍କ ସହ ଏକାକାର ହେବାକୁ ଚେଷ୍ଟା କରନ୍ତି ନାହିଁ । ଦେଶୀୟ ରାଜ୍ୟର ବିଲୋପ ଘଟିଥିଲେ ମଧ୍ୟ ଜୟପୁର ଜମିଦାରର ପ୍ରାୟ ୧୦ହଜାର ବର୍ଗ ମାଇଲ ଅଞ୍ଚଳରେ ରାଜସ୍ୱ ଆଦାୟର ଭାର ଜୟପୁର ରାଜା ବା ଜମିଦାରଙ୍କର । ସରକାର ନିୟମ କରି ଦେଲେଣି ଯେ ରାଜ୍ୟରୁ ବେଠି ଭେଟି ଉଠିଗଲା ବୋଲି । ଠାଣାଦାର ଅମୀନ ସାଧାରଣ ଲୋକଙ୍କୁ ଏକଥା ଜାଣିବାକୁ ଦେବାକୁ ନାରାଜ । ସେମାନେ ଲୋକଙ୍କୁ ବେଠି ଖଟାଇ ଚାଲୁଥିଲେ । ବିଶ୍ୱନାଥ ଓ ତାଙ୍କର ସହକର୍ମୀମାନେ ଜିଲାର ବିଭିନ୍ନ ସ୍ଥାନରେ ପ୍ରଚାର କଲେ ବେଠିପ୍ରଥା ସରକାର ବନ୍ଦ କରିଦେଲେ, ତେଣୁ କେହି ବେଠିକୁ ଯିବେ ନାହିଁ । ବେଠି ଭେଟି ବନ୍ଦ ହେଲେ ଅମୀନ ଆଉ ଦଣ୍ଡ ଦେଲେ ନାହିଁ । ତେଣୁ ୩।୪ ବର୍ଷ ଭିତରେ ବେଠି ଭେଟି ବନ୍ଦ ହୋଇଗଲା ।

ଜମିବାଡ଼ି ସମ୍ପର୍କରେ କିନ୍ତୁ ଅଲଗା କଥା, ଅମୀନର ବନ୍ଧୁ ହେଲେ ଅଧିକ ଜମିଥିବା ଲୋକେ, ତାଙ୍କୁ ସାହୁକାର ବୋଲି କହନ୍ତି ।

ସେମାନଙ୍କ ମଧ୍ୟରୁ ଶତକଡ଼ା ୯୦ ଭାଗ ଜମିମାଲିକ ଆଦିବାସୀ ମାନଙ୍କ ପରିଶ୍ରମରେ ସମତୁଲ ହୋଇଥିବା ଜମି ଉପଯୁକ୍ତ ପାରିଶ୍ରମିକ ନଦେଇ ଦଖଲ କରି ନେଇଛନ୍ତି । କୋରାପୁଟ ଜିଲ୍ଲାରେ ଶହେବର୍ଷ ତଳେ ଆର୍ଯ୍ୟ ଲୋକଙ୍କ ସଂଖ୍ୟା ମୁଷ୍ଟିମେୟ । ଏ ସମ୍ବନ୍ଧରେ ପୁରୁଣା ଗେଜେଟିଅର୍‌ରୁ କେତେକାଂଶ ଉଦ୍ଧାର କରିବା ଉଚିତ ମନେକଲି । ୧୯୪୫ ମସିହାରେ R.C.S.Bellଙ୍କ ପ୍ରକାଶିତ କୋରାପୁଟ ଗେଜେଟିଅର୍‌ରୁ ଜଣାଯାଏ "୧୮୪୮ ମସିହାରେ ଗୁଣୁପୁର ତାଲୁକରେ ଲୋକେ ରାଜାଙ୍କ ବିରୁଦ୍ଧରେ ଓ ରାଜାଙ୍କ ମ୍ୟାନେଜର ମାନଙ୍କ ଅତ୍ୟାଚାର ଓ ଅନ୍ୟାୟ ଶାସନ ବିରୁଦ୍ଧରେ ଆନ୍ଦୋଳନ କରି ସ୍ଥାନୀୟ ରାଜକର୍ମଚାରୀ ମାନଙ୍କୁ ଗୁଣୁପୁର ତାଲୁକରୁ ବିଦା କରିଦେଲେ ।" "୧୮୫୫ ଜୁଲାଇ ମାସରେ ବ୍ରିଟିଶ୍ ସରକାର ଏଜେଣ୍ଟଙ୍କୁ ଜୟପୁର ରାଜ୍ୟର କେତେକ ଅଞ୍ଚଳରେ ପୋଲିସ ଓ ରାଜସ୍ୱ ବିଭାଗ ବୁଝିବାରେ ଦାୟିତ୍ୱ ଦେଲେ । ୧୮୭୩ରେ ଲେଫଟ୍‌ନାଣ୍ଟ୍ ସ୍ମିଥ ଆସିଷ୍ଟାଣ୍ଟ୍ ଏଜେଣ୍ଟ ଭାବେ ଓ କ୍ୟାପ୍‌ଟେନ୍ ଗାଲ୍‌ବ୍ରେଥ୍ ଆସିଷ୍ଟାଣ୍ଟ୍ ପୋଲିସ୍ ସୁପରିନ୍‌ଟେଣ୍ଡେଣ୍ଟ୍ ଭାବେ ନିଯୁକ୍ତ ହେଲେ ୧୮୭୮ରେ ଜଣେ ଶବର ଜାତିର ମୁଖିଆ ଅନ୍ୟାୟରେ ଆରେଷ୍ଟ ହୋଇଥିବା ଯୋଗୁ ପୁଟ୍ଟାସିଂର ପୋଲିସ ଇନ୍‌ସପେକ୍ଟର ଓ ୪ଜଣ କନେଷ୍ଟବଲ୍‌ଙ୍କୁ ମାରି ଦେଇଥିଲେ ଓ ପୁଟ୍ଟାସିଂ ଥାନାଘରେ ନିଆଁ ଲଗାଇ ଦେଇଥିଲେ ।

୧୮୯୧ର ଜନଗଣନା ଅନୁଯାୟୀ ବର୍ତ୍ତମାନ କୋରାପୁଟ ଜିଲ୍ଲା କୁହାଯାଉଥିବା ଅଞ୍ଚଳ (କାଶୀପୁର ବ୍ୟତୀତ)ର ଲୋକସଂଖ୍ୟା ୬୯୦,୩୦୩ ଥିଲା । (୯୦ ବର୍ଷ ମଧ୍ୟରେ ଏହା ଲୋକସଂଖ୍ୟା ୩ଗୁଣ ହୋଇଯାଇଛି) ୧୯୨୧ରୁ ୧୯୩୧ ମଧ୍ୟରେ ମାଲକାନଗିରି ତାଲୁକର ଲୋକସଂଖ୍ୟା ଶତକଡ଼ା ୪୧.୯ ବଢ଼ିଲା ୧୯୩୧ରୁ ୪୧ ମଧ୍ୟରେ

ନବରଙ୍ଗପୁର ତାଲୁକର ଲୋକସଂଖ୍ୟା ଶତକଡ଼ା ୩୩.୦୯ ବଢ଼ିଲା ୧୯୩୨ରେ ରାୟପୁର ବିଜୟନଗରମ୍ ରେଳପଥ ହେବାପରେ ରାୟଗଡ଼ା ସବ୍‌ଡ଼ିଭିଜନ୍‌ର ଲୋକସଂଖ୍ୟା ଅଶାତୀତ ଭାବେ ବୃଦ୍ଧି ପାଇଲା ।

ଏହି ଅତ୍ୟଧିକ ଲୋକସଂଖ୍ୟା ବୃଦ୍ଧିର କାରଣ ଜିଲ୍ଲା ବାହାରୁ ଅଧିକ ଲୋକ ଆସି ଏଠାରେ ବାସକଲେ । ଜନଗଣନାରେ ବ୍ୟକ୍ତିର ଜନ୍ମସ୍ଥାନ ସମ୍ପର୍କରେ ରେକର୍ଡ ନଥିବାରୁ ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ମତ ଦିଆଯାଇ ପାରୁନାହିଁ ।

ଉପରୋକ୍ତ ବିବରଣୀରୁ ଜଣାଯାଏ ଆଦିବାସୀମାନେ ରାଜଶକ୍ତିର ଅତ୍ୟାଚାରକୁ ମନେ ମନେ ବିରୋଧ କରୁଥିଲେ ଓ ସମୟ ସମୟରେ ଅତିଷ୍ଠ ହୋଇ ହିଂସାକାଣ୍ଡ ଭିଆଉଥିଲେ । ବାହାରର ଲୋକେ ଗତ ୧୦୦ବର୍ଷ ମଧ୍ୟରେ ଆଦିବାସୀ ମାନଙ୍କୁ ନିଜ ଭୂମିରେ ଭୂମିହୀନ କରିଛନ୍ତି । ବିଶ୍ୱନାଥ ପଟ୍ଟନାୟକ ଏହିସବୁ କଥା ମର୍ମେ ମର୍ମେ ଅନୁଭବ କରୁଥିଲେ ଓ ଏକ ଆନ୍ଦୋଳନ୍ ପାଇଁ ପ୍ରସ୍ତୁତ ହେଉଥିଲେ ସେହି ଆନ୍ଦୋଳନର ପୃଷ୍ଠ ଭୂମିରେ ଥିଲା ଏହି ଠାକାଠାର ଇତିହାସ, ଛମାଣ ଆଠ ଗୁଣ୍ଠ, ସାଣିଆ, ଭଗିଆ, ନେତାଙ୍କର ମୋହନ ସେନାପତି । କେତେକ ଟାଉଟର ଓ ଡ଼ମ ହରିଜନଙ୍କୁ ଛାଡ଼ିଦେଲେ ଅନ୍ୟମାନେ ସରକାରୀ ଲୋକଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ । ସେମାନେ ଭାବୁଥିଲେ ଯେ ସରକାରୀ ଲୋକ ଆଦିବାସୀ ମାନଙ୍କୁ ଶୋଷଣ ମୁକ୍ତ କରିପାରିବେ ନାହିଁ, କାରଣ ସେମାନେ ଶୋଷଣ ଯନ୍ତ୍ରର ଅଂଶ ବିଶେଷ । କିନ୍ତୁ ସରକାରୀ କର୍ମଚାରୀ ଗଲେ ସେମାନେ ଡ଼ରେ ଆସି ତାଙ୍କ ପାଖରେ ହାଜର ହୁଅନ୍ତି, କାରଣ ହାଜର ନହେଲେ ହୁଏତ କର୍ମଚାରୀ କିଛି କ୍ଷତି କରିପାରେ ।

ବାହାରୁ ଆସିଥିବା ଲୋକେ ଓ ସ୍ଥାନୀୟ ଶୋଷକ ଗୋଷ୍ଠି କମ୍ ପୁଂଜି ଓ ଅଧିକ ସାହସ ତଥା ଶୋଷଣ ମନୋବୃତ୍ତି ଧରି ଆସିଥିଲେ । ଆଦିବାସୀଙ୍କ ଲୋକଙ୍କୁ ସେମାନେ ଭୟ କରନ୍ତି । ଆଦିବାସୀର ଏହି ଶୋଷକଗୋଷ୍ଠି ପ୍ରତି ଭୟ ଥାଏ ବୋଲିମଧ୍ୟ ସମସ୍ତେ ଜାଣନ୍ତି । ଥାଣାଦାର ଅମୀନକୁ ଅଧିକ ଭୟ, କାଳେ ଜମିରୁ ଉଚ୍ଛେଦ କରିବ । ଆଜି ,, ଅଧିକାଂଶ ସାହୁକାରଙ୍କ ପୂର୍ବପୁରୁଷ ଶହେବର୍ଷତଳେ ଭୂମିହୀନ ବ୍ୟକ୍ତି ଥିଲେ । ଆଦିବାସୀଙ୍କ ସହ ଶଠମିତ୍ର ଭାବେ ରହିଲେ । ଦରକାର ବେଳେ କିଛି କିଛି ଋଣ ଦେଲେ । କେତେବେଳେ ସ୍ୱଳ୍ପ ମୂଲ୍ୟରେ ଜମି କିଣିଲେ । ଅଧିକାଂଶ ସମୟରେ ନୂଆ ଜମି ଆବାଦ କରିବାକୁ ଆଦିବାସୀକୁ ଉତ୍ସାହିତ କଲେ । କହନ୍ତି "ଏ ଜମିରୁ ପଥର କାଢି, ଗଛର ମୂଳକାଢ଼ି, ଜମି ସମାନ କର । କେହି ବାଧା ଦେଲେ ଆମେ ତୋ ପଛରେ ଅଛୁ ।' କିନ୍ତୁ ଜମି ପ୍ରସ୍ତୁତ ହୋଇଗଲେ ତାର ଅର୍ଦ୍ଧାଧିକ ଅଂଶ ସାହୁକାର ଚାଷ କରେ । ପୈତୃକ ଖଜଣା ଦିଆ ଜମିର ଇତିହାସ ମଧ୍ୟ ସେହିପରି । ଆଦିବାସୀ ଭାବେ ଅମୀନ କାଳେ ଠକ ଦେବ, ତେଣୁ ଖଜଣା ପୈଠ କରିବା ପାଇଁ ସେ ସାହୁକାରର ସାହାଯ୍ୟ ନିଏ । ତାକୁ ଟଙ୍କା ଦିଏ, ସାହୁକାର ମଧ୍ୟ କହେ, ତୁ ବୁଝିପାରିବୁ ନାହିଁ, ତେଣୁ ମୁଁ ତୋପାଇଁ ଖଜଣା ଦେଇଦେବି । ଖଜଣା ବାବଦରେ ଏକ ଛପା କାଗଜ ମଧ୍ୟ ସେ ପାଏ । କିନ୍ତୁ ଏହିପରି ୫।୭ବର୍ଷ କାଗଜ ପାଇଲା ପରେ ସେ ହଠାତ୍ ଜାଣେ ଯେ ଜମି ତାର ବୋଲି ଆଉ ରହିନାହିଁ । କାହିଁକି କେଜାଣି ଜମି ନିଲାମ ହୋଇସାଇଛି । ସାହୁକାର ଓ ଥାଣା ଅମୀନର ମିଳିତ ଚକ୍ରାନ୍ତରେ ଖଜଣା ପୈଠ ହୋଇନାହିଁ ଓ ସେହିହେତୁ ଜମି ଆଉ ତାର ହୋଇ ରହିନାହିଁ । ସେ ସାହୁକାରକୁ କେବେ କେବେ ପଚାରେ, କେବେ କେବେ ନିରର୍ଥକ ଭାବ କିଛି କହେ ନାହିଁ । କହେ ଦଣ୍ଡନାଥଙ୍କୁ ।

ଏହିସବୁ କଥା ଶୁଣି ଶୁଣି ବିଶ୍ୱନାଥ ଆଦିବାସୀ ସାଧାରଣ ଗୃହୀ ମାନଙ୍କର ଆଲୋଚନା ସଭା ଡ଼କାଇଥିଲେ । ସେ ଆଲୋଚନା କୌଣସି ISM ବା ମତବାଦ ଦ୍ୱାରା ନିୟନ୍ତ୍ରିତ ହୋଇନଥିଲା । ବିଶ୍ୱନାଥ ଗାନ୍ଧିଜୀଙ୍କର ଅହିଂସା ମତବାଦ ବ୍ୟତୀତ ଅନ୍ୟ କୌଣସି ମତରେ ବିଶ୍ୱାସ କରନ୍ତି ନାହିଁ । ଗୋପବନ୍ଧୁ ଚୌଧୁରୀଙ୍କ ପରାମର୍ଶ ଓ ଆଚାର୍ଯ୍ୟ ମହାଶୟଙ୍କ ଆଶୀର୍ବାଦ ବ୍ୟତୀତ ଅନ୍ୟ କିଛି ପାଥେୟ ତାଙ୍କର ନଥାଏ ।

ବିନୋବା ଭାବେ ଓ କମ୍ୟୁନିଷ୍ଟ ମାନଙ୍କର ତନ୍ତ୍ର କିଛାକିଛି ଭିତରେ ବିଶ୍ୱନାଥ ସ୍ଥିରକଲେ ସରକାର ଉପରେ ନୈତିକ ଚାପ ପକାଇବେ । ଲୋକଙ୍କର ଦାବି ନ୍ୟାୟ ରହିଛି, ଏକଥା ସମସ୍ତେ ସ୍ୱୀକାର କରିବେ । କିନ୍ତୁ ଆମର ନିଜ ସରକାର କାନ ଦେଇ କିଛି କରିବେ ନାହିଁ । ତେଣୁ ଆଦିବାସୀ ମାନଙ୍କ ଦାବୀ ଉତ୍ଥାପନ କରାଗଲା । କୁଜେନ୍ଦ୍ରିର ଭୂସତ୍ୟାଗ୍ରହୀ ସମାଜ ନାମରେ ଏକ ଅନୁଷ୍ଠାନ ମାଧ୍ୟମରେ । ଏହି ଅନୁଷ୍ଠାନର ତରଫରୁ ପତ୍ର ଅବିକଳ ନକଲ ତଳେ ଦିଆଗଲା ।

## ନିବେଦନ

ଆପଣମାନେ ଜାଣନ୍ତି ଯେ କୋରାପୁଟ ଜିଲାର ସମସ୍ତ ବାସିନ୍ଦା ହେଉଛନ୍ତି ଆଦିବାସୀ । ଏ ଅଞ୍ଚଳର ସମସ୍ତ ଜମି ଜମା ଦିନେ ଆଦିବାସୀ ମାନଙ୍କର ଥିଲା । ସେମାନେହିଁ ଥିଲେ ଏ ସମସ୍ତ ଜମିଜମାର ପ୍ରକୃତ ସତ୍ତ୍ୱାଧିକାରୀ । କାଳକ୍ରମେ ବାହାର ଲୋକ ଆସି ଆଦିବାସୀ ମାନଙ୍କର ସରଳତା ଓ ନିର୍ବୋଧତାର ସୁଯୋଗ ନେଇ ଅନ୍ୟାୟ ଓ ଅସତ୍ ଉପାୟରେ ସେମାନଙ୍କଠାରୁ ସମସ୍ତ ଜମି ଅପ-ହରଣ କରି ନେଇଛନ୍ତି ଏବଂ ଆଜି ଆଦିବାସୀ ମାନଙ୍କ ପରିବର୍ତ୍ତେ

ବାହାରୁ ଆସିଥିବା ଲୋକେ ହିଁ ହେଉଛନ୍ତି ସମସ୍ତ ଜମିର ମାଲିକ । ଫଳରେ ଏ ଅଞ୍ଚଳର ଆଦିବାସୀ ମାନେ ଆଜି ଭୂମିହୀନ । ନିଜ ଅଞ୍ଚଳରେ ଫସଲ ଆମଦାନୀ କରି ସୁଦ୍ଧା ସେହି ଫସଲକୁ ଭୋଗ କରିବାର ଅଧିକାର ସେମାନଙ୍କର ନାହିଁ । ସେମାନଙ୍କ ମଧ୍ୟରୁ ଅନେକ ଯେ ଖାଇବାକୁ ନପାଇ ମରିଛନ୍ତି ଓ ମରୁଛନ୍ତି ଏକଥା କାହାରି ଅଛପା ନୁହେଁ । ପ୍ରଧାନତଃ ବଣର ଫଳ ଓ କନ୍ଦା ଖାଇ ସେମାନେ ଜୀବନ ନିର୍ବାହ କରୁଛନ୍ତି ଅଥଚ ଏଣେ ପୋଡୁଚାଷ କରିବା ଅପରାଧରେ ଆଦିବାସୀମାନଙ୍କ ଉପରେ ପ୍ରତ୍ୟେକ ବର୍ଷ ହଜାର ହଜାର ଜରିମାନା ଜାରି କରା ହେଉଛି ଏବଂ ସେଥିପାଇଁ ସେମାନେ ଜେଲ୍ ମଧ୍ୟ ଭୋଗୁଛନ୍ତି । ତାହା ସହିତ ପୋଡୁ ଚାଷରୁ ଆମଦାନୀ କରୁଥିବା ଫସଲକୁ ଜୋରିମାନା ସ୍ୱରୂପ ଦେଇ ସର୍ବସ୍ୱାନ୍ତ ହୋଇ ପୁଣି ସେହି ବଣୁଆ କନ୍ଦାର ଆଶ୍ରୟ ନେଉଛନ୍ତି । କିନ୍ତୁ କାହିଁକି ଯେ ସେମାନେ ଆଜି ନିର୍ବୋଧ ଭାବରେ ପୋଡୁଚାଷ କରୁଛନ୍ତି ତା'ର ମୂଳ କାରଣ କେହି ଅନୁସନ୍ଧାନ କରୁ ନାହାନ୍ତି । ଏହାର ଏକମାତ୍ର କାରଣ ହେଉଛି ଯେ ସେମାନେ ଆଜି ଜମିହୀନ । ସେମାନେ କୋରାପୁଟ ଜିଲାର ସମସ୍ତ ଜମିର ମାଲିକ ହୋଇ ସୁଦ୍ଧା ନିଜର ସମସ୍ତ ସତ୍ତ୍ୱାଧିକାରରୁ ବଞ୍ଚିତ । ସେମାନଙ୍କ ପାଖରେ ଚଷିବା ପାଇଁ ଆଜି ଜମିଥିଲେ ସେମାନେ ପୋଡୁଚାଷ କରନ୍ତେ ନାହିଁ ବା ଖାଇବାକୁ ନପାଇ ମରନ୍ତେ ନାହିଁ ।

ବଡ ସୁଖର କଥା, ଏତେ ବର୍ଷକାଳ ଅତ୍ୟାଚାର ନିର୍ଯ୍ୟାତନା ଓ ଅନାଦରରେ ସଡ଼ି ସଡ଼ି ଏବେ ସେମାନଙ୍କର ବୋଧଶକ୍ତି ଫେରି ଆସିଛି । ସେମାନେ ଆଜି ସେମାନଙ୍କର ନ୍ୟାଯ୍ୟ ଦାବୀ ହାସଲ କରିବାପାଇଁ ବଦ୍ଧ ପରିକର ହୋଇଛନ୍ତି । ଏହି ଘୋର ଅନ୍ୟାୟର ପ୍ରତିଶୋଧ କରିବାର ଚେତନା ଆଜି ସେମାନଙ୍କ ପ୍ରାଣରେ ଏବଂ

ସେଥିପାଇଁ ସେମାନେ ବିପ୍ଳବ ନେଉଛନ୍ତି । ଏହି ଚେତନାର ବଳରେ ସେମାନଙ୍କର ନ୍ୟାର୍ଯ୍ୟ ଦାବୀ ହାସଲ କରିବା ପାଇଁ ସେମାନେ ଅଳ୍ପ ହିଂସାର ଅସ୍ତ୍ର ନେବାକୁ ଯାଉଛନ୍ତି । ତେଣୁ ଯଦି, ଆମେ (ଯେଉଁମାନେ କି ସେମାନଙ୍କର ଅବସ୍ଥା ବୁଝିଛୁ) ଯଦି ସେମାନଙ୍କୁ କୌଣସି ପନ୍ଥା ନ ଦେଖାଉଁ, ତେବେ ନିକଟ ଭବିଷ୍ୟତରେ ସେମାନେଯେ ହିଂସାର ଅସ୍ତ୍ର ନେବେ ଏଥିରେ କୌଣସି ସନ୍ଦେହ ନାହିଁ । ଫଳରେ ସାରା ଦେଶରେ ବିଶୃଙ୍ଖଳା ଓ ଅଶାନ୍ତି ବ୍ୟାପିଯିବ ।

ବହୁ ଚିନ୍ତା ଓ ଗବେଷଣାପରେ ମନେ ହେଉଛି ଯେ ଏହି ବିପ୍ଳବର ଏକାନ୍ତ ହିଁ ପ୍ରୟୋଜନ । କିନ୍ତୁ ହିଂସାକୁ ଏଡ଼ାଇବା ପାଇଁ ଏ ଧାରାକୁ ପରିବର୍ତ୍ତନ କରିବା ଦରକାର । ଏଯୁଗର ମହାମାନବ ମହାତ୍ମାଗାନ୍ଧୀ ଓ ସତ୍ୟାଗ୍ରହର ଯେଉଁ ପନ୍ଥା ଦେଖାଇ ଯାଇଛନ୍ତି ତାକୁ ଅନୁସରଣ କରିବା ଫଳରେ ହିଁ ଏହି ଅହିଂସକ ବିପ୍ଳବ ଓ ସତ୍ୟାଗ୍ରହ ସଫଳ ହୋଇ ପାରିବ । ଅନ୍ୟାୟର ବିରୋଧ କରିବା ଓ ଜମିର ପ୍ରକୃତ ସତ୍ତ୍ୱାଧିକାରୀଙ୍କୁ ତା'ର ଜମି ଫେରସ୍ତ କରିଦେବାର ଦାବୀ ନେଇ ଆମେ ଗୋଟିଏ ସତ୍ୟାଗ୍ରହର ଆୟୋଜନ କରୁଛୁ । ଏଣୁ ନିବେଦନ କରୁ ଯେ ଆପଣ ଜାତିବର୍ଣ୍ଣ ନିର୍ବିଶେଷରେ ଏଥିରେ ପୂର୍ଣ୍ଣ ପ୍ରାଣରେ ସହଯୋଗ କରି ଆମର ଏ ସତ୍ କାର୍ଯ୍ୟକୁ ସାଫଲ୍ୟ ମଣ୍ଡିତ କରନ୍ତୁ ।

ନିବେଦକ

ତା ୨୭।୧୧ ୫୧

ଭୂ-ସତ୍ୟାଗ୍ରହୀ-ସମାଜ
ପୋ.ଅ. କୁନ୍ଦୁରା
ଜି. କୋରାପୁଟ

ଏହି ନିବେଦନ ପତ୍ର ପ୍ରାୟ ୫୦ ଖଣ୍ଡ ଗାଆଁରେ ବଣ୍ଟାଗଲା । ଅଧିକାଂଶ ଗାଆଁରେ ଛୋଟ ଛୋଟ ସଭା ହେଲା । ସେ ସବୁ ଗାଆଁର ପ୍ରତିନିଧି କୁଟେନ୍ଦ୍ରୀରେ ମିଳିତ ହେଲେ । ସଭାରେ ସ୍ଥିର ହେଲା ଯେ ଅନ୍ୟାୟ ବିରୋଧ କରିବା ମନୁଷ୍ୟ ହିସାବରେ ପ୍ରତ୍ୟେକଙ୍କର କର୍ତ୍ତବ୍ୟ । କେବଳ କେଉଁ ଜଣଙ୍କୁ ସନ୍ତୋଷ କରିବା ପାଇଁ ହଜାର ହଜାର ଲୋକଙ୍କୁ ପଶୁଭଳି କନ୍ଦା, ଶାଗ, ଡାଳ ଖାଇବାକୁ ଛାଡ଼ିଦେବା ଠିକ୍ ହୋଇନାହିଁ । କାମ ଅତି କଠିନ କାରଣ ଧନୀ ଲୋକେ ଓ ସରକାରଙ୍କ ବିରୋଧରେ ପ୍ରସ୍ତୁତ ଲଢେଇ ହେବ । ପ୍ରଥମେ ସତ୍ୟାଗ୍ରହୀ ତାଲିକା ତିଆରି ହେବ । ଅପହୃତ ଜମିର ତାଲିକା ଓ ଜମି ଅପହରଣ କରି ନେଇଥିବା ପରିବାରର ଇତିହାସ ସଂଗ୍ରହ ହେବ । ଅପହରଣକାରୀ ମାନଙ୍କୁ ଜମି ଫେରାଇ ଦେବାକୁ ନିବେଦନ କରାଯିବ । ଅପହୃତ ଜମିର ଇତିହାସ ଦେଇ ଜମି ଫେରସ୍ତ ନେବାକୁ ସରକାରଙ୍କୁ ଅନୁରୋଧ କରାଯିବ । ଯଦି ଏହି ଜମିର ମାଲିକାନା ସଂପର୍କରେ ଅଦାଲତରେ ବିଚାର ହୁଏ ତେବେ ପ୍ରତିନିଧି ଦଳ ଜରିଆରେ ଆଇନଗତ ସାହାଯ୍ୟ ଦିଆଯିବ ଓ ବିବୃତ୍ତି ଦିଆଯିବ । ଯଦି ଅଦାଲତରେ ଦିନ ଗଡ଼ାଇବା ନୀତି ଅନୁସରଣ କରାଯାଏ ତେବେ ୩।୪ଟି ତାରିଖ ପରେ ଅଦାଲତରେ ଜଣାଇ ଦିଆଯିବ ଯେ ଏହି ଦିନ ଗଡ଼ାଇବା ନୀତି ଯୋଗୁ ଆସନ୍ତା ତାରିଖରୁ କେହି ଅଦାଲତରେ ହାଜର ହେବେ ନାହିଁ । ତାପରେ ଅପହରଣକାରୀ ଓ ସରକାରଙ୍କୁ ଜଣାଇ ଅପହୃତ ଜମିରେ ପ୍ରବେଶ କରାଯିବ । କୌଣସି ବ୍ୟକ୍ତି ନିମ୍ନଲିଖିତ ପ୍ରତିଜ୍ଞା ପତ୍ର ଅନୁଯାୟୀ କାର୍ଯ୍ୟ ନକଲେ ସତ୍ୟାଗ୍ରହୀ ହୋଇପାରିବେ ନାହିଁ ।

୧) ମୁଁ ସତ୍ୟ, ଅହିଂସା ଓ ନ୍ୟାୟ ବାଟରେ ସର୍ବଦା ଚାଲିବି ।

୨) ମୁଁ ନିଜକୁ ସବୁପ୍ରକାର ପ୍ରଲୋଭନଠାରୁ ଦୂରେଇ ରଖିବି ।

୩) ମୋର ବ୍ୟକ୍ତିଗତ ଜୀବନରେ ଛୁଆଁ ଅଛୁଆଁ କରିବି ନାହିଁ

ଓ ନିଶା ସେବନ କରିବି ନାହିଁ ।

୪) ମୁଁ ସର୍ବଦା ଖଦି ପିନ୍ଧିବି ।

୫) ମୁଁ ଅନ୍ୟାୟର ବିରୋଧପାଇଁ ଅନୁଷ୍ଠିତ ଯୁଦ୍ଧରେ ଜେଲ ଯିବାପାଇଁ ଏପରିକି ନିଜର ଜୀବନକୁ ବଳି ଦେବା ପାଇଁ ପ୍ରସ୍ତୁତ ରହିବି ।

୬) ମୋର ଜେଲ ହୋଇଗଲେ ମୁଁ ମୋ ପରିବାର ଓ ଆଶ୍ରିତ କୁଟୁମ୍ବ ମାନଙ୍କର ଭରଣ ପୋଷଣ ପାଇଁ ଅନୁଷ୍ଠାନରୁ କୌଣସି ସାହାଯ୍ୟ ଚାହିଁବି ନାହିଁ ।

୭) ଅନୁଷ୍ଠାନର ଯେ କୌଣସି ନିର୍ଦ୍ଦେଶକୁ ମୁଁ ପାଳନ କରିବା ପାଇଁ ସର୍ବଦା ପ୍ରସ୍ତୁତ ରହିବି ।

୮) ମୋର ବୟସ ୧୮ବର୍ଷରୁ ଊର୍ଦ୍ଧ୍ୱ ଅଟେ । ଉପରୋକ୍ତ ସର୍ତ୍ତ ଗୁଡ଼ିକୁ ପାଳନ କରିବାପାଇଁ ସ୍ୱଇଚ୍ଛାରେ ପ୍ରତିଶ୍ରୁତ ହୋଇ ସତ୍ୟାଗ୍ରହୀ ହେବା ପାଇଁ ନିମ୍ନରେ ସ୍ୱାକ୍ଷର କଲି ।

ସ୍ୱାକ୍ଷର (ପୂରାନାମ)..................................

ପୂରାଠିକଣା ..................................

ତାରିଖ....... ..........

ଆଦିବାସୀମାନଙ୍କୁ ଏହି ପ୍ରତିଜ୍ଞାପତ୍ରର ମର୍ମ ଭଲ ଭାବରେ ବୁଝାଇ ଦିଆଗଲା । ଅପହୃତ ଜମିର ଇତିହାସ ସମ୍ପର୍କରେ ଏକ ଶ୍ୱେତପତ୍ର ପ୍ରସ୍ତୁତ କରାଗଲା ସତ୍ୟାଗ୍ରହୀ ସମାଜ ପକ୍ଷରୁ । ସେଥିରେ ଲେଖାଥିଲା "ରାୟଗଡ଼ା, ଗୁଣୁପୁର, ବିଷମ କଟକ, ଗୁଡ଼ାରି ଆଦି ଅଞ୍ଚଳରେ କନ୍ଧ ଓ ସଉରା ଆଦିବାସୀଙ୍କ ଜମି ଅନେକ ବର୍ଷ ଧରି ଅପହୃତ ହୋଇ ଯାଇଛି । ଖାଲି କାଗଜରେ ଟିପଚିହ୍ନ ନେଇ ଯେତିକ କରଜ ଦିଆଗଲା ତା'ର ଦଶଗୁଣ ଲେଖି ଆଦିବାସୀଙ୍କର ସମସ୍ତ ଜମି ସାହୁକାରମାନେ ସମସ୍ତ ଜମି ହସ୍ତାନ୍ତରିତ କରି ନେଇ-

ଛନ୍ତି । ସାମାନ୍ୟ ଭୁଲକୁ କେନ୍ଦ୍ର କରି ଜୁଲୁମ ଓ ଗୁଣ୍ଡାମି ଦ୍ୱାରା ଜମି ସବୁ ହରାଇଛନ୍ତି । ଏ ଅଞ୍ଚଳର ସମସ୍ତ ଜମି ଏହି ନିରୀହ ଅଶିକ୍ଷିତ ଆଦିବାସୀ ମାନଙ୍କ ହାଡଭଙ୍ଗା ପରିଶ୍ରମରୁ ହିଁ ଆଜି ଠିଆ ହୋଇଛି । ଏପରି ଉପାୟରେ ଆଦିବାସୀ ମାନଙ୍କ ଜମି ଗୁଡିକ ଯିବା କଥାକୁ ସାମ୍ରାଜ୍ୟ-ବାଦୀ ଇଂରେଜ ସରକାର ମଧ୍ୟ ସ୍ୱୀକାର କରି ୧୯୧୬ ସାଲରେ "ମାନ୍ଦ୍ରାଜ ଇଷ୍ଟେଟ୍ ଲ୍ୟାଣ୍ଡ ଆକ୍ଟ" କରାଇ ସରକାରଙ୍କ ବିନା ଅନୁମତିରେ ବାହାରର ଲୋକେ ଆଦିବାସୀଙ୍କ ସମ୍ପତ୍ତି ନେଇ ପାରିବେ ନାହିଁ ବୋଲି ଆଦେଶ କରିଥିଲେ । ଦୁଃଖର କଥା, ବର୍ତ୍ତମାନର ସରକାର ୧୨ବର୍ଷ ମଧ୍ୟରେ ହସ୍ତାନ୍ତରିତ ହୋଇଥିବା ସମ୍ପତ୍ତି ଆଦି-ବାସୀ ମାନଙ୍କୁ ଫେରାଇ ଦିଆଯିବ ବୋଲି ଆଇନ ତିଆରି କରିବା ସମୟକୁ ସେମାନଙ୍କର ସମସ୍ତ ଜମି ୬୦।୭୦ବର୍ଷ ତଳେ ହସ୍ତାନ୍ତର ହୋଇ ଯାଇଥିଲା । ଅତଏବ ଏ ଆଇନ ତାଙ୍କର କୌଣସି ହିତ କାମରେ ଆସିଲା ନାହିଁ । ବରଂ ନ୍ୟସ୍ତ ସ୍ୱାର୍ଥ ଲୋକମାନେ ବିଭିନ୍ନ ପ୍ରକାର ଆଇନର ଛିଦ୍ର ଅନୁସନ୍ଧାନ କରି ନିଜର କାଗଜ ପତ୍ରକୁ ଧୂର୍ତ୍ତତାର ସହ ସଜାଡ଼ି ନେଲେ ।

ଯେଉଁ କେତେଜଣ ଆଦିବାସୀଙ୍କର କିଛି ଜମି ରହିଲା ସେମାନେ ମଧ୍ୟ ଅତ୍ୟାଚାରର ସମ୍ମୁଖୀନ ହେଲେ । ଆଦିବାସୀମାନେ ଶାସନ କର୍ତ୍ତୃପକ୍ଷଙ୍କୁ ଭୟ କରନ୍ତି ଓ ଅବିଶ୍ୱାସ କରନ୍ତି କାରଣ ସେମାନେ ଭାବନ୍ତି ଯେ ହାକିମ, ପୋଲିସ ଓ ଅମିନ ସର୍ବଦା ସମ୍ପତ୍ତି ବାନ ଲୋକର ଅବୈଧ ସମ୍ପତ୍ତି ବଢ଼ାଇ ପାରନ୍ତି, ମାତ୍ର ଗରିବ ଲୋକର ଅପହୃତ ସମ୍ପତ୍ତି ଫେରାଇ ପାରନ୍ତି ନାହିଁ । ଜମିହୀନ ହେବାପରେ ସାହୁକାର ଜମିକୁ ଭାଗରେ ଚାଷ କଲେ । ୧୯୦୮ ମସିହାପରେ ସରକାର ଭାଗଚାଷୀର କେତେକ ଅଧିକାରକୁ ସାବ୍ୟସ୍ତ କଲେ । ଏ ଅଞ୍ଚଳରେ ନିରୀହ ଆଦିବାସୀ ୧୯୫୨ ମସିହା ପାଏ ସେ

ସମ୍ପର୍କରେ ଅଜ୍ଞ ଥିଲେ । ସେମେ ସେମାନେ ନିଜଦାବୀ ପାଇଁ ଜିଦ୍ ଧରିବାରୁ ଧନୀମାନେ ତାଙ୍କୁ ଧମକ ଦେଲେ, ମାଡ଼ ମରାଇଲେ, ମିଛ ମୋକଦ୍ଦମା କରି ହଇରାଣ କଲେ, ଶେଷରେ ଭୂମିରୁ ବଞ୍ଚିତ କଲେ । କୋରାପୁଟ ଜିଲାର ସମସ୍ତ ଜମି ଜୟପୁରର ଜମିଦାରଙ୍କର ଓ ତାଙ୍କ ତଳେ ମଧ୍ୟ ସର୍ତ୍ତାଧିକାରଙ୍କ ସର୍ତ୍ତରେ ଅଳ୍ପ ସଂଖ୍ୟକ ଲୋକ ସମସ୍ତ ଜମିର ମାଲିକ ହୋଇ ବସିଛନ୍ତି । ଏହି ଜମିକୁ ଅହିଂସା ଓ ସତ୍ ଉପାୟରେ ଫେରାଇ ଆଣି ଜମିର ପ୍ରକୃତ ଅଧିକାରୀଙ୍କୁ ଫେରସ୍ତ ଦେବା ଉଦ୍ଦେଶ୍ୟରେ ଭୂସତ୍ୟାଗ୍ରହୀ ସମାଜ ଗଠନ କରାଯାଇଛି ।

ଜମି ଅପହରଣ କାରୀଙ୍କର ଇତିହାସ ସମ୍ପର୍କରେ ବିଶ୍ୱନାଥ ଚରିତ୍ରରେ ଲେଖିଛନ୍ତି ଗୋପବନ୍ଧୁ ଚୌଧୁରୀଙ୍କୁ "ବାପା-ଆପଣଙ୍କର ଧାରଣା ଯେ ମୁଁ ଜଣେ ସାଂପ୍ରଦାୟିକ ବାଦୀ, ତେଣୁ ତେଲୁଗୁ ଓଡ଼ିଆ ଭେଦ ମୋ ମନରେ ସବୁବେଳେ ରହୁଛି । ଅବଶ୍ୟ ମୋ ନିଜ ଦୋଷ ମୁଁ ଜାଣିପାରୁ ନାହିଁ ବୋଧେ, କିନ୍ତୁ ମୁଁ ନିଜକୁ ସବୁବେଳେ ନିଜ ଦୃଷ୍ଟିକୋଣରୁ କୌଣସି କଥା ବିଚାର କରିବାକୁ ଦେଇ ନାହିଁ । ମୁଁ ତେଲୁଗୁ ଓଡିଆ ବ୍ୟକ୍ତି ଆକ୍ଷେପରେ କଥା ଉଠାଏନାହିଁ । ଅନ୍ୟାୟ ସହିତ ବିରୋଧ କରିବା କଥା, ତେଣୁ ଏ ଅଞ୍ଚଳରେ କୁମୁଟି ମାନେ ବଡ଼ ଶୋଷକ ବୋଲି ବାରମ୍ବାର କହି ଆସିଛି । ତେଲୁଗୁ କୃଷୀ ଲୋକମାନଙ୍କ ମଧ୍ୟରେ ରେଡ଼ିକା, ସୁନାରୀ, ଭଣ୍ଡାରୀ, କମା ଓ ଧୋବା ଇତ୍ୟାଦି ମଧ୍ୟ ଅଛନ୍ତି, ସେମାନେ ଜମି ମାଲିକ ନୁହଁନ୍ତି । ଜମି ମାଲିକ ମଧ୍ୟରେ ବେଶି ହେଉଛନ୍ତି ଓଡ଼ିଆ ବ୍ରାହ୍ମଣ ଓ କୁମୁଟି । ଏମାନେ ବାହାରୁ ଆସିଥିଲେ ଅଭାବରେ ପଡ଼ି । କୁମୁଟି ମାନେ ପ୍ରତ୍ୟେକ କ୍ଷେତ୍ରରେ ଶୋଷିବାରେ ଲାଗିଲେ, ବ୍ରାହ୍ମଣ ଓ ତେଲଙ୍ଗା ନିଜନ୍ତ ଅଭାବ ବେଶି ପରିମାଣରେ ବଢ଼ାଇନଥିବାରୁ ପ୍ରତ୍ୟେକ କ୍ଷେତ୍ରରେ ଶୋଷଣ ନକରି କେତୋଟି ନିର୍ଦ୍ଦିଷ୍ଟ ଯାଗାରେ

ବସି ଶୋଷିଲେ । କୁମୁଟିମାନେ ପ୍ରତ୍ୟେକ କ୍ଷେତ୍ରରେ ରକ୍ତ ଶୋଷିବା ଦ୍ୱାରା ତାଙ୍କର ଅତ୍ୟାଚାରଟା ସବୁବେଳେ ଆଖିଆଗରେ ପଡ଼ୁଲା । ସେ ଦୃଷ୍ଟିରୁ ସମସ୍ତ ଅତ୍ୟାଚାରର ମଧ୍ୟରେ ଯେଉଁଟା ବେଶୀ ମନେ ହେଉଥିଲା ତା'କଥାହିଁ ଆଗେ ଉଠୁଥିଲା । ଅନ୍ୟ ମାନଙ୍କ କଥା ପରେ ଉଠୁଥିଲା............।"

ଗୁଣୁପୁର ଓ ରାୟଗଡ଼ା ଅଞ୍ଚଳର ୩୦।୩୫ଗଣ୍ଡ ଗ୍ରାମରେ
ଏହି ଭୂସତ୍ୟାଗ୍ରହ ପାଇଁ କ୍ଷେତ୍ର ପ୍ରସ୍ତୁତ ହେଲା । ଉଲକୋଣା,
ଖାଟଗୁଡ଼ା, ଡ଼ବରସିଂଗି, ଅଟେଇଁ, ଖସାକାମ ପଦର, କେଂଦୁଗୁଡ଼ା,
କଇଠ ପଦର, ଝିକାଂଗିରଇ, କେଂଦୁଗୁଡ଼ା, ପାଣ୍ଡ୍ରାଝୋଲ, ବରଯା,
ପେଣ୍ଡ୍ରିକା, ବୁଢାଗୁଡ଼ା, ସୁଚଲପାଙ୍ଗା, ଡ଼ରଲା, ପେରୁପାଙ୍ଗ, ଆମ୍ବା-
ବାଡ଼ି, ବଡ଼ାମ, ଅସାଡ଼ା, ଶିଶଗୁଡ଼ା, ଲକ୍ଷ୍ମୀପୁର, ହୁକୁମାଗୁଡ଼ା,
ଲବା, କଡମା କୁଡ଼କେଂଦ୍ରୀ, ଖିଲପଦର, ଯୋଗେଷ ପଦର, ଗଡ଼ପୁ
ବଲ୍ଲ, ବାମ୍ଭଣି ଡଙ୍ଗର, ସିକମି, ଗାଜିଗୁଡ଼ା, ସିରୁଗୁଡ଼ା, ବାଡ଼ଗ୍ରାମ
ଇତ୍ୟାଦି ଗ୍ରାମର ଲୋକେ ଏହି ଆନ୍ଦୋଳନରେ ଯୋଗଦେଲେ ।
ମିଠି ଟିକାରଇ, କୁଜାର ଗାଆଁ, ଟିକରୁ ପଡ଼ା, ଉକୁମ୍ବା, ଗଙ୍ଗ ପାଡ଼ୁ,
ପେଣ୍ଡ୍ରରଗେଣ୍ଡା, ଡୁଗୁଡ ବାଇ । ଗୋପବନ୍ଧୁ ଚୌଧୁରୀ ବିଶ୍ୱନାଥଙ୍କୁ
ଚିଠି ଜରିଆରେ ଜଣାଇଲେ "ପରିସ୍ଥିତି ପ୍ରକୃତରେ ଜଟିଳ ହେବାକୁ
ଦେବା ଠିକ୍ ନୁହେଁ । ଅପରର ଜମି ଜବରଦସ୍ତି ଚଷିବାଟା ସତ୍ୟା-
ଗ୍ରହର ବାଟ ନୁହେଁ । ହଜାର ହଜାର ଲୋକ ଜେଲ୍ ବାହାରିଲେ
ମଧ୍ୟ ତାହା କଦାପି ସଫଳ ହେବ ନାହିଁ ବୋଲି ମୋର ଦୃଢ଼ମତ
ତେଣୁ ଚଷି ନଚେଡ଼ିବା ଓ ଜମିବାଲାଙ୍କର ଜମିକୁ ପଡିଆ ପକେଇ
ଦେବାଭଳି ଅସହଯୋଗ ଆନ୍ଦୋଳନ ଅଧିକ ଭଲ ଓ ନ୍ୟାୟଯୁକ୍ତ ।

ତେବେ ଯେଉଁମାନେ ଭାଗଚାଷୀ ଥିଲେ ସେମାନଙ୍କୁ ମାଲିକ ବେଦଖଲ କରିବାକୁ ବସିଲେ ସେମାନେ ଜମି ଦଖଲ ନ ଦେଇ

ଜବରଦସ୍ତ ଚଷି ନଜର ସତ୍ତ୍ୱ ବଜାଏ ରଖିବାକୁ ସତ୍ୟାଗ୍ରହ କରି ପାରନ୍ତି । କିନ୍ତୁ ଅନ୍ୟଥା ଯେଉଁ ଜମିରେ କୌଣସି ପ୍ରକାର ସ୍ୱତ୍ୱ ନାହିଁ ସେ ଜମିକୁ ଦଖଲ କରିବାକୁ ବସିବା ସତ୍ୟାଗ୍ରହ ହୋଇ ନପାରେ । ଅଯଥା ଗୁଡ଼ିଏ ଲୋକ କଷ୍ଟ ପାଇବେ ଓ ଫଳ କିଛି ହେବ ନାହିଁ ବୋଲି ମତେ ଲାଗୁଛି ।"

ବିଶ୍ୱନାଥ ସିଧାସଳଖ ବୁଝାଇ ପାରିଲେ ନାହିଁ, ଅନ୍ୟତ୍ର ମତପ୍ରକାଶ କଲେ "ଆଇନ ଅଦାଲତରେ କେବଳ ପଇସାବାଲା ଲୋକେ ନ୍ୟାୟ ପାଆନ୍ତି ବୋଲି ଆଦିବାସୀମାନେ କହୁଛନ୍ତି । ଅବୈଧ ଉପାୟରେ ଜମି ଅପହରଣକୁ ଅନ୍ୟାୟ ବୋଲି ପ୍ରମାଣିତ କରିବା ଅଶିକ୍ଷିତ ନିରନ୍ନ ଆଦିବାସୀମାନଙ୍କ ପକ୍ଷରେ ଅସାଧ୍ୟ । ଏ ପରିସ୍ଥିତିରେ ନିଃସ୍ୱ ଆଦିବାସୀ ସର୍ବହରା ମାନେ ହିଂସାକୁ ଆଶ୍ରୟ କରିବା ବା ହିଂସକ ସଙ୍ଗଠନ ଉପରେ ବିଶ୍ୱାସ ରଖିବା କୌଣସି ଦଳ କଥାରେ ଭୁଲିଯିବା ସ୍ୱାଭାବିକ କଥା । ମାତ୍ର ତନ୍ମଧ୍ୟରୁ ଅଧିକାଂଶ ବିବେକୀ ନେତା ଓ ଯୁବକ କର୍ମୀ ରକ୍ତାକ୍ତ ସଂଗ୍ରାମକୁ ଅବିଶ୍ୱାସ କଲେ । ଇତି ମଧ୍ୟରେ ଏ ଅଞ୍ଚଳରେ ମାନ୍ଦ୍ରାଜ ଏଷ୍ଟେଟ୍ ଲ୍ୟାଣ୍ଡ ଆକ୍ଟ ଅନୁଯାୟୀ ସେଟଲ୍‌ମେଣ୍ଟ ଆରମ୍ଭ ହେଲା । ଏ ଆଇନରେ ଭାଗଚାଷୀମାନଙ୍କ 'ସବଟେନାଣ୍ଟ ଛେଟ' ର ସ୍ୱୀକୃତ କରାଗଲା । ଫଳରେ ଯେଉଁ ଜମିକୁ ସେମାନେ ଅନ୍ୟାୟ ଠକାମିରେ ଭୁଲିଯାଇ ହରାଇଛନ୍ତି ବୋଲି ଭାବିଲେ, ସେହି ଜମିକୁ ସାହୁକାର ମାନେ ଜବରଦସ୍ତି ଟିପ କରାଇ ନେଇଛନ୍ତି ବୋଲି ଦେଖିଲେ ତାହା ମଧ୍ୟକୁ ନିଃସଙ୍କୋଚରେ ପ୍ରବେଶ କଲେ । ଏ ପ୍ରକାର ପ୍ରବେଶକୁ ନ୍ୟସ୍ତସ୍ୱାର୍ଥ ଲୋକମାନେ ଆଇନ ଓ ଦଫାର ସୁଯୋଗ ନେଇ ଅର୍ଥ ସର୍ବସ୍ୱ ଓକିଲ ମାନଙ୍କ ପରାମର୍ଶରେ ବେଆଇନ ପ୍ରମାଣ କରାଇ ପାରିଲେ । ତେଣୁ ଏ ସତ୍ୟାଗ୍ରହ ।

ପୁନଶ୍ଚ ତା ୨୯।୩।୫୨ ରିଖରେ ଶ୍ରୀ ନୀଳକଣ୍ଠ ଶର୍ମାଙ୍କ ସଭାପତିତ୍ୱରେ କୁଜେନ୍ଦ୍ରୀରେ ସଭାହେଲା । ବଉଳା ଗାଆଁରେ ଆଦି-ବାସୀ ସ୍ତ୍ରୀ ଶହଶହ ସଂଖ୍ୟାରେ କୁଜେନ୍ଦ୍ରୀରୁ ଗୁଣୁପୁର ଶୋଭା-ଯାତ୍ରାରେ ଚାଲିଲେ ଓ ସେଠାରେ ଥିବା ସରକାରୀ କର୍ତ୍ତୃପକ୍ଷ ଓ ରାଜାଙ୍କ ତହସିଲଦାରଙ୍କୁ ଦାବୀ ଜଣାଇଲେ । ସ୍ଲୋଗାନ୍ ଦେଇ ସାରା ଯାତ୍ରା ଚାଲିଲେ, କିନ୍ତୁ ସରକାର ପକ୍ଷରୁ କୌଣସି ଦମନ ମୂଳକ କାର୍ଯ୍ୟ କରାଗଲା ନାହିଁ । ଏମିତି ଆନ୍ଦୋଳନ ଚାଲିଲା । ତାପରେ ସତ୍ୟା-ଗ୍ରହୀ ସମାଜ ସାହୁକାର ମାନଙ୍କୁ ନିବେଦନ କଲେ ଭାଗଚାଷ ଆଇନ୍ ଅନୁଯାୟୀ ଚାଷୀମାନଙ୍କୁ ନ୍ୟାଯ୍ୟ ପ୍ରାପ୍ୟ ଦେବାପାଇଁ । ବିଶ୍ୱନାଥ ଲିଖିତ ଅନୁରୋଧ କଲେ "ଭଗବାନ ଆପଣଙ୍କୁ ସମ୍ପତ୍ତି ଦେଇଛନ୍ତି । ଆପଣ ନ୍ୟାୟସଙ୍ଗତ କାମକଲେ, ତାଙ୍କର ଆଶୀର୍ବାଦରୁ ଅଧିକ ପାଇବେ । "ଆନୁଷ୍ଠାନିକ ଭାବେ ଭୂମି ଅଧିକାରୀ ମାନଙ୍କ ନିକଟକୁ ନିବେଦନପତ୍ର ପଠାଗଲା । ସେହିପରି ଏକ ପତ୍ରର ଅବିକଳ ନକଲ ଦିଆଗଲା ।

## ଶେଷ ନିବେଦନ

ଶ୍ରୀଯୁକ୍ତ ବୈଶ୍ୟରାଜୁ ଲକ୍ଷ୍ମୀନାରାୟଣ, କୁଜେନ୍ଦ୍ରୀଙ୍କ
ସମୀପେଷୁ

ମହାଶୟ,

ଆପଣଙ୍କ ଆଖି ଆଗରେ ବର୍ଷ ବର୍ଷ ଧରି ଘୋର ଉପାସରେ ନାନା ଅଖାଦ୍ୟ ଖାଇ ଆପଣଙ୍କୁ ତଥା ସରକାରଙ୍କୁ ମୋର ପେଟ ଦୁଃଖ କଥା ଓ ଜମିହୀନ ଅବସ୍ଥା କଥା ବାରମ୍ବାର ଜଣାଇ ନିରାଶ ହେଲା । ବର୍ଷ ବର୍ଷ ଧରି ସବୁପ୍ରକାର ମାଡ଼ଗାଳି ଓ ଅତ୍ୟାଚାର ସହି ଆପଣମାନଙ୍କ ସୁଖ ସୁବିଧା ପାଇଁ ବ୍ୟବସ୍ଥା କରି ଆସିବା ସତ୍ତ୍ୱେ ମୋର ଏ ଦରିଦ୍ର ଦେହ, ଭୋକିଲା ପେଟ ଓ ମୋ ଛୁଆପିଲା

ମାନଙ୍କର କଷ୍ଟ କାନ୍ଦଣା ଆପଣ ମାନଙ୍କ କାନରେ ବାଜନ୍ତି ନାହିଁ । ବାରମ୍ବାର ନିବେଦନ ସତ୍ତ୍ୱେ ଯେତେବେଳେ ଆପଣ ମୋର ଦୁଃଖ ଗୁହାରି ନ ଶୁଣିଲେ, ସେତେବେଳେ ଏଭଳି ଅନ୍ୟାୟର ବିରୋଧ ପାଇଁ ଭଗବାନଙ୍କର ଆଶ୍ରୟ ନେଇ ମୁଁ ମୋ ନିଜ ସମ୍ପତ୍ତି ଜମିରେ ଗୃହ କରିବାକୁ ଠିକ୍ କରୁଛି । ଏ ଜମି ଆଜି ଆପଣଙ୍କ ହାତରେ ରହିଥିଲେ ମଧ୍ୟ ମୋର ପୂର୍ବପୁରୁଷ ଏହାକୁ ପଥର ଚାଡ଼ି ବାହାର କରିଥିଲେ ଓ ନିଜର ସରଳତା, ଓ ଅଜ୍ଞାନ ପଣରୁ ଆପଣଙ୍କ ହାତକୁ ଯାଇଥିଲା । ଧର୍ମ ଦୃଷ୍ଟିରୁ ବିଗ୍ଭର କଲେ ଜମିରେ ମୋର ପୂର୍ଣ୍ଣ ଅଧିକାର ଅଛି । ଅଧର୍ମ ଓ ଅନ୍ୟାୟ କରିବା ଯେତିକି ପାପ, ତାକୁ ଦେଖି ଭୁନ ପଡ଼ିବା ମଧ୍ୟ ସେହିପରି ପାପ । ତେଣୁ ପାପରେ ଭାଗୀ ନ ହୋଇ ସେହି ଅଧର୍ମ ଓ ଅନ୍ୟାୟର ବିରୋଧ ପାଇଁ ମୁଁ ଆଜ ବାହାରୁଛି । ଅହିଂସା ଉପାୟରେ ଆପଣଙ୍କର ସମସ୍ତ ନିର୍ଯ୍ୟାତନା ସହି ତା୧୬।୭।୫୨ ରିଖ ସକାଳେ ଭୂମିରେ ପ୍ରବେଶ କରୁଛି ।

ନିବେଦକ...........................

ଠିକଣା...........................

ଏହି ଅଭିଯାନକୁ 'ସମାଜ' ଦୈନିକ ସମ୍ବାଦପତ୍ରରେ ଉକାୟତର ସମ ପର୍ଯ୍ୟାୟଭୁକ୍ତ କରାଯାଇଥିଲା । ୧୦।୭।୫୨ ତାରିଖର 'ସମାଜ'ରେ "ବିଭିନ୍ନ ସ୍ଥାନରେ ଉକାୟତ ଓ ଗଣ୍ଡଗୋଳ" ଶୀର୍ଷକ ସମ୍ବାଦରେ "କୋରାପୁଟରେ ଶବର ଗଣ୍ଡଗୋଳ" ଖବର ପ୍ରକାଶ ପାଇଥିଲା । ଇତି ମଧ୍ୟରେ ବିଶ୍ୱନାଥ ଓ ବାଲେଶ୍ୱରର ତତ୍କାଳୀନ ଯୁବକ କର୍ମୀ ଶ୍ରୀମାନ୍ ସୁଧାଂଶୁ ଶେଖର ଦାସ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ଭେଟି ଏହି ସମସ୍ୟା ସମ୍ପର୍କରେ ଅବଗତ କରାଇ ଥିଲେ । ମୁଖ୍ୟମନ୍ତ୍ରୀ ନିଜେ ସମାଜବାଦୀ ମତର ହେଲେ ମଧ୍ୟ ଶାସନ କଳରେ ଥିବାରୁ ଅନେକାଂଶରେ ଶୃଙ୍ଖଳିତ । ପ୍ରବୀଣ ନେତା

ରାଜକୃଷ୍ଣ ବୋଷ ବିଶ୍ୱନାଥଙ୍କ ମତକୁ ଓଡ଼ିଶା ଆସେମ୍ବ୍ଲିରେ ସମର୍ଥନ କରିଥିଲେ । ଯାହାହେଉ ମୁଖ୍ୟମନ୍ତ୍ରୀ ଶାସନକଳ ଜରିଆରେ ଅନୁସନ୍ଧାନ କରାଇ ଜଣେ ସ୍ପେସାଲ ଅଫିସରଙ୍କୁ ଏହାର ସମାଧାନ ପାଇଁ ନିଯୁକ୍ତ କଲେ । ନବବାବୁ ବିଶ୍ୱନାଥଙ୍କୁ ଲେଖିଲେ ଯେ ଆଦିବାସୀଙ୍କ ଉପରେ ଯେଉଁ ବେଆଇନ୍ ଜୁଲୁମ ଅତ୍ୟାଚାର ଓ ଶୋଷଣ ହେଉଛି ତାକୁ ବନ୍ଦ କରିବା ପାଇଁ ଜଣେ ଅଫିସରଙ୍କୁ ଏ ଭୂମି ସମସ୍ୟା ସମାଧାନ ପାଇଁ ପଠା ଯାଇଛି । ଏହା ସମୟରେ ଅର୍ଥାତ୍ ୧୯୫୨ ମେ ମାସ ୨୦ ତାରିଖଠାରୁ ଜୁନ୍ ୨୦ ତାରିଖ ମଧ୍ୟରେ ଭୂସତ୍ୟାଗ୍ରହୀ ସମାଜ ପ୍ରାୟ ୩୫ ଟି ଗ୍ରାମରେ ଅପହୃତ ଜମିରେ ପ୍ରବେଶ କଲେ ଓ ସରକାର ସମାଧାନ ପାଇଁ ଏକ ଅଧ୍ୟାପନ୍ୟଡିଆ ବ୍ୟବସ୍ଥା କଲେ ରେଭିନ୍ୟୁ କମିଶନର୍ ଭି.ରାମନାଥନ୍ ଜିଲ୍ଲା ମାଜିଷ୍ଟ୍ରେଟ୍, ଏସ୍.ଏ. ଏନେମ୍ ଓ ସମସ୍ଥାନରେ ଉତ୍ତମାନଙ୍କ ସହ ଆସି କୁଜେନ୍ଦ୍ରିରେ କର୍ମୀମାନଙ୍କ ସହ ଏ ସମସ୍ୟାର ସମାଧାନ ସମ୍ପର୍କରେ ଆଲୋଚନା କରିଥିଲେ । ତା'ପରେ ଗୁଣୁପୁର ଡାକବଙ୍ଗଳାରେ ଘୋଷଣା କଲେ ଯେ ୧୯୧୭ ମସିହାଠାରୁ ଆଦିବାସୀ ମାନଙ୍କ ଅପହୃତ ଜମିକୁ ଫେରାଇ ଆଣିବାକୁ ଉଦ୍ୟମ ହେବ । ଭାଗଚାଷୀ ମାନଙ୍କୁ ପ୍ରଜାସତ୍ତ୍ୱ ମିଳିବା ଦିଗରେ ଉଦ୍ୟମ ହେବ । ନିଃସ୍ୱ ଲୋକଙ୍କୁ ଅରକ୍ଷିତ ଜଙ୍ଗଲ ଓ ଅନାବାଦୀ ପଡ଼ିଆ ଜମି ପଟ୍ଟା ଦିଆଯିବ । ହଳବଳଦ ସାହାଯ୍ୟ ଦିଆଯିବ । ୫ଟି କେନ୍ଦ୍ରରେ ସମବାୟ ବିଭାଗ ଜରିଆରେ ୧୫ ହଜାର ଟଙ୍କା ଲେଖାଏଁ ସାହାଯ୍ୟ ଦେଇ ଭଣ୍ଡାର ଖୋଲାଇ ଷ୍ଟାଣ୍ଡ ଓ ମାପ ପ୍ରଚଳନ କରାଇ କିଣାବିକାରେ ଆଦିବାସୀ ମାନଙ୍କୁ ସାହାଯ୍ୟ କରାଯିବ । କ୍ୟାମ୍ପ କୋର୍ଟ ଜରିଆରେ ଜମି ଫେରାଇ ଦେବା କାମ ଚାଲିବ ଓ ଏହି କେଶ୍ ପାଇଁ ଆଦିବାସୀ ମାନଙ୍କୁ କୋର୍ଟଫି ଦେବାକୁ ପଡ଼ିବ ନାହିଁ । ଅଦାଲତରେ ଏ କେଶ୍ ଲଢ଼ିବା ପାଇଁ ସେମାନେ ଓକିଲଙ୍କ ସାହାଯ୍ୟ ପାଇବେ । ଏହି ଘୋଷଣା ଉପରେ

ସାମୟିକ ଆସ୍ଥା ସ୍ଥାପନ କରି ସତ୍ୟାଗ୍ରହୀ ସମାଜ ସ୍ଥିର କଲେ ଯେ ୬ମାସ ପାଇଁ ଆନ୍ଦୋଳନ ସ୍ଥଗିତ ରଖାଯିବ ।

ଏହି ଆନ୍ଦୋଳନ ଏକ ବିଚିତ୍ର ପରିବେଶ ମଧ୍ୟରେ ଚାଲୁ-ଥିଲା । ବିଶ୍ୱନାଥଙ୍କର ଶୁଭାକାଂକ୍ଷୀ ଶ୍ରୀ ନବକୃଷ୍ଣ ଚୌଧୁରୀ ଶାସନର ମୁଖ୍ୟଭାବେ ଆଇନର ସୀମାଲଙ୍ଘନ କରିବାକୁ ପ୍ରସ୍ତୁତ ନଥିଲେ । ଗୋଠବନ୍ଧୁ ଚୌଧୁରୀ ତାତ୍ତ୍ୱିକ ଦୃଷ୍ଟି କୋଣରୁ ଏ ପ୍ରକାର ଆନ୍ଦୋଳନକୁ ସମର୍ଥନ କରୁଥିଲେ । ରାଜନୈତିକ ମହଲରେ ଲୋକ ଭାବୁଥିଲେ କଂଗ୍ରେସ ଦଳର ଇଙ୍ଗିତରେ ବିଶ୍ୱନାଥ ଏପରି ଗଣ୍ଡ-ଗୋଳକରୁଛନ୍ତି । କିନ୍ତୁ ବିଶ୍ୱନାଥଙ୍କୁ ପ୍ରତିକୂଳ ବାତାବରଣ ମଧ୍ୟରେ ଏକାକୀ ଅନ୍ୟାୟର ପ୍ରତିରୋଧ କରିବାକୁ ହୋଇଥିଲା । ତତ୍କାଳୀନ ପାର୍ଲିମେଣ୍ଟ ସଦସ୍ୟ ଟି.ସାଙ୍ଗାନା ୧।୭।୫୨ରେ ଦୈନିକ ପ୍ରଜାତନ୍ତ୍ରର ଭୂମି ଦଖଲ ଆନ୍ଦୋଳନ ବନ୍ଦ ରଖନ୍ତୁ ବୋଲି ଲେଖିଥିଲେ । ତା'ର ଉତ୍ତରରେ ବିଶ୍ୱନାଥ କହିଥିଲେ "ଆମ୍ଭମାନଙ୍କ ଆନ୍ଦୋଳନର ପ୍ରକୃତ କାରଣ ହୁଏତ ନଜାଣି ଅନ୍ୟ କୌଣସି ନ୍ୟସ୍ତ ସ୍ୱାର୍ଥ ଲୋକ-ମାନଙ୍କ ଉଠପଡ଼ି ଏ ନିବେଦନ ଆପଣ କରିଛନ୍ତି । ଏ ଆନ୍ଦୋଳନରେ କଂଗ୍ରେସ ବିରୋଧୀ କୌଣସି ଦଳର ହାତ ନାହିଁ । ବର୍ଷ ବର୍ଷ ଧରି ଆମ ଉପରେ ଯେଉଁ ଅତ୍ୟାଚାର ଓ ଶୋଷଣ ଚାଲିଛି ତା'ରି ପ୍ରତିବାଦରେ ଆମେ ଗାନ୍ଧିଜୀଙ୍କ ପ୍ରଦର୍ଶିତ ସତ୍ୟ ଅହିଂସା ମାର୍ଗରେ ଏ ଆନ୍ଦୋଳନ କରୁଛୁ । ଦେଶର ସ୍ୱାଧୀନତା ପାଇଁ ଭାରତର ଜାତୀୟ କଂଗ୍ରେସର ନିର୍ଦ୍ଦେଶରେ ଆମ୍ଭେମାନେ ସବୁବେଳେ ସଂଗ୍ରାମକୁ ଡେଇଁପଡ଼ି ସକ୍ରିୟ ଭାଗନେବାରେ କେବେହେଲେ ପଛରେ ନାହୁଁ । କିନ୍ତୁ ଯେଉଁ କଂଗ୍ରେସ ଶାସନଗାଦୀରେ ବସି ଯେତେବେଳେ ଆମର ଚେର, କନ୍ଦା, ସଲପଗଣ୍ଡି ଓ ତେନ୍ତୁଳି ମଂଜିର ଜାଉ ଖିଆ ଦେଖି ମଧ୍ୟ ୫ବର୍ଷର ଶାସନ ଭିତରେ କିଛି ନକଲେ, ଓଲଟି ପେଟ ବିକଳରେ ପୋଡ଼ୁଚାଷ କଲୁ ବୋଲି ଶହ ଶହ ଟଙ୍କା ଜୋରିମାନା

ପକାଇଲେ, ସେତେବେଳେ ଆଉ କାହାକୁ ବିଶ୍ୱାସ କରି ଆମେ ନୀରବ ରହି ଥାଆନ୍ତୁ ? ଯଦି ସତ୍ୟ ଓ ଅହିଂସା ଏ ଦୁନିଆରେ ଥିବ ତେବେ ଆମେ ନ ହେଲେ ବି ଆମର ବଂଶଧର ମାନେ ଅନ୍ତତଃ ଖାଇପିଇ ବଞ୍ଚିବାର ଅଧିକାର ପାଇବେ ।"

୧୯୫୨ ମସିହା ଅଗଷ୍ଟ ମାସରେ ଶ୍ରୀ ଗୋପୀନାଥ ମହାନ୍ତିଙ୍କୁ ସରକାର ସ୍ପେସାଲ୍ ଅଫିସର୍ ଭାବେ ନିଯୁକ୍ତ କଲେ । ଗୋପୀନାଥ ବାବୁ ସେହିଦିନୁ କୋରାପୁଟ ଆଦିବାସୀ ମାନଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ, ଶାସନଗତ ସମ୍ପର୍କରୁ ସାମାଜିକ ଓ ସାଂସ୍କୃତିକ ସମ୍ପର୍କ ଦୃଢ଼ୀଭୂତ ହେଲା । ବିଶ୍ୱନାଥ ଓ ଗୋପୀନାଥ ପରସ୍ପର ଚିହ୍ନାଚିହ୍ନି ହେଲେ ।

ଅକ୍ଟୋବର ମାସରେ ରାୟଗଡ଼ା ଓ ଗୁଣୁପୁର ଅଞ୍ଚଳରେ ୪୫ଜଣ ଆଦିବାସୀ ପ୍ରତିନିଧି ଏକତ୍ର ହୋଇ ଏହି ସତ୍ୟାଗ୍ରହ ଓ ତାର ଫଳାଫଳ ସମ୍ପର୍କରେ ସମୀକ୍ଷା କଲେ ଓ ସରକାରଙ୍କ ପଦକ୍ଷେପ କେତେକାଂଶରେ ଆଦିବାସୀମାନଙ୍କ ସ୍ୱାର୍ଥ ସଂରକ୍ଷଣ କରିପାରିବ ବୋଲି ମତପ୍ରକାଶ କଲେ । ତେଣୁ ଆନ୍ଦୋଳନ କାର୍ଯ୍ୟକ୍ରମ ବନ୍ଦ କରାଗଲା । ନିଷ୍ପତ୍ତି ହେଲା ଏହାପରେ ଯେଉଁମାନେ ସତ୍ୟାଗ୍ରହ ନାମରେ ବିଶୃଙ୍ଖଳା ସୃଷ୍ଟି କରିବେ, ସେଥିପାଇଁ ସେମାନେ ଦାୟୀ ରହିବେ, ସେ କାର୍ଯ୍ୟପାଇଁ ଅନୁଷ୍ଠାନ ଦାୟୀହେବେ ନାହିଁ । ସତ୍ୟାଗ୍ରହୀ ସମାଜର କର୍ମୀମାନେ ଗ୍ରାମେ ଗ୍ରାମେ ବୁଲି ଅପହୃତ ଜମି ଓ ସାଗରବନ୍ଧ ସଂପର୍କରେ ସମସ୍ତ ତଥ୍ୟ ଯେପରି ଦରଖାସ୍ତ ଆକାରରେ କର୍ତ୍ତୃପକ୍ଷ କର୍ମଚାରୀ ମାନଙ୍କଠାରୁ ଆସେ ତା'ର ବ୍ୟବସ୍ଥା କରିବେ ।

ଏତିକରେ ଭୂ ସତ୍ୟାଗ୍ରହର ପରିସମାପ୍ତି ଘଟିଲା ଓ ବିଶ୍ୱନାଥ ସ୍ୱାସ୍ଥ୍ୟ ମଜୁରି ସମସ୍ୟା ଓ ଭୂଦାନ କାର୍ଯ୍ୟକ୍ରମରେ ମନୋନିବେଶ କଲେ ।

# କୋରାପୁଟରେ ଭୂ-ସତ୍ୟାଗ୍ରହ ପରେ ଭୂଦାନ

ଗୋପବନ୍ଧୁ ଚୌଧୁରୀ ଅନୁଗୁଳ ସର୍ବୋଦୟ ସମ୍ମିଳନୀ ପରେ ୧୯୫୧ ମସିହାରେ ପଦଯାତ୍ରା କରୁକରୁ କୋରାପୁଟ ଯାଇଥିଲେ । ବିଶ୍ୱନାଥ ଗଞ୍ଜାମ ମାନରୁ ତାଙ୍କ ସାଙ୍ଗରେ ଗଲେ । କୋରାପୁଟ କୁଳ ସିଂ ଓ ଜଲତାରରେ ଶହଶହ ଲୋକ ଏମାନଙ୍କୁ ସ୍ୱାଗତ କଲେ । ଲୋକେ କହିଲେ ଆଜ୍ଞାଙ୍କ ସାଙ୍ଗରେ ଗୋପବାବୁ ଆସିଛନ୍ତି ଭୂସତ୍ୟାଗ୍ରହର ନେତୃତ୍ୱ ନେବାକୁ । ଗୋପବାବୁ ଲୋକଙ୍କଠାରୁ ସବୁକଥା ବୁଝିଲେ । ଅନୁଭବ କଲେ ଯେ ସତ୍ୟାଗ୍ରହ ବ୍ୟାପକ ରୂପ ନେଇପାରେ, କିନ୍ତୁ ସେ ନିଜେ ଏହା ସହ ପ୍ରତ୍ୟକ୍ଷ ଭାବେ ଜଡ଼ିତ ହୋଇ ପାରିବେ ନାହିଁ । ତାଙ୍କର ମତ ମୁଦ୍ରିତ ହୋଇ ବଣ୍ଟନ କରାଗଲା ।

## ଗୋପବନ୍ଧୁ ଚୌଧୁରୀଙ୍କ ମତାମତର ପ୍ରତିଲିପି
## କୁଟେନ୍ଦ୍ରୀ ଅଞ୍ଚଳର କର୍ମୀମାନଙ୍କ ପ୍ରତି :-

ତମେ ମାନେ ସମ୍ଭବତଃ ଆଜ୍ଞା (ବିଶ୍ୱନାଥ ପଟ୍ଟନାୟକ)ଙ୍କ କଥାରେ ଏଠାକୁ ଆସିଛ । ତାଙ୍କର ସଙ୍ଗେ ପରାମର୍ଶ କରି ସବୁ କରିବ । ତୁମକୁ ଯାହା ଖରାପ ଲାଗିବ ବା ଅଡୁଆ ଲାଗିବ ତମେ ତାଙ୍କୁ ଜଣାଇବ । ତାଙ୍କ ସଙ୍ଗେ ଆଲୋଚନା କରିବ, ତାଙ୍କର ଭୁଲ ହେଉଛି ବୋଲି ମନେ ହେଲେ ତାଙ୍କୁ ଜଣାଇବ ।

ମୁଁ ଏଠାକାର ଅନ୍ନ ସମସ୍ୟା ଦେଖିବ ବୋଲି ଆସିଛି । ତା'ର ପ୍ରତିକାର କ'ଣ ମୋତେ ଜଣାଥିଲେ ମୁଁ ସେ କଥା ଆଗରୁ କହି ପଠାଇ ଥାନ୍ତି, ମାତ୍ର ମତେ ତାହା ଜଣା ନାହିଁ । ମୁଁ ଏଠି ଆସି ଶୁଣିଲି, ତମେମାନେ ବସି ଗୋଟିଏ ବାଟ କାଢ଼ିଛ । ସେ କଥା

ମତେ ଆଗରୁ ଜଣାଇଥିଲେ ମୁଁ ତରତରରେ ଆସି ନ ଥାନ୍ତି । ଏବେ ମୁଁ ସେ କଥା ଜାଣିପାରି ତମ ସେ ପାଖରେ ବୁଲିବା ବନ୍ଦକଲି । ତମେ ଗୋଟାଏ କଥା ବିଶ୍ୱରୁଥିବ, ମୁଁ ଆଜି ଗୋଟାଏ କଥା ଲୋକଙ୍କୁ କହୁଥିବ, ଏହା ଠିକ୍ ହେବ ନାହିଁ । ତମେ ନିଜ ଭିତରେ ବସି ବିଶ୍ୱନାଥ ସଙ୍ଗେ ପରାମର୍ଶ କରି ଯାହା କରିବାକୁ ଭଲ ତାହା କର । ମୁଁ ଜାଣେ ବିଶ୍ୱନାଥଙ୍କ ପରାମର୍ଶରେ ତମେ ଅନେକ ଗାନ୍ଧୀ କାମ କରିଛ ଓ କରୁଛ, ତମେ ନିଶା ଛାଡ଼ିଛ ଓ ଛାଡ଼ୁଛ, ତମେ ସୂତାକାଟି ଲୁଗା ପିନ୍ଧୁଛ, ତମେ ଅଳସୁଆ ହୋଇ ବସୁନାହଁ ତମେ ପରିଷ୍କାର ପରିଚ୍ଛନ୍ନ ରହୁଛ, ତମେ ସତକୁ ମାନୁଛ, ମିଛକୁ ଅନ୍ୟାୟକୁ ଡରୁନାହଁ, ନିଜ ଭିତରେ କଳି କଜିଆ ତୁଟାଇ ତମ ନିଜର ମେଳ ବଢ଼ାଉଛ । ଅହିଂସ ଶାସ୍ତ୍ର ବାଟରେ ନିଜେ କେମିତି ଠିକ ହେବ ତାହା କରୁଛ । ମୋର ବିଶ୍ୱାସ ତମେ ଯାହା କରିବ, ଗାନ୍ଧୀ ମତରେ ତଉଲ କରିବ । ଆମେ ନିଜେ କଷ୍ଟ ସହି ଲୋକଙ୍କୁ ପ୍ରବର୍ତ୍ତାଇ ସେମାନଙ୍କୁ ବଦଳାଇବା । ଆମେ ଇଂରେଜଙ୍କୁ ଏଠାରୁ ସେହିପରି ବିଦାୟ ଦେଲୁ । ସେମାନେ ନିଜ ଇଚ୍ଛାରେ ଚାଲିଗଲେ । ରାଜାମାନେ ମଧ୍ୟ ଆପଣା ରାଜ୍ୟ ଲେଖିଦେଇ ଚାଲିଗଲେ । ନିଜ ଇଚ୍ଛାରେ ସେମାନେ ଗଲେ ବୋଲି ସେମାନଙ୍କ ସଙ୍ଗେ ଲୋକଙ୍କର ଭଲ ଭାବ ବଢ଼ିଛି । ସେହିପରି ଜଣା ପଡ଼ୁଛି ଜମିଦାରମାନେ ନିଜ ଇଚ୍ଛାରେ ଜମି ଛାଡ଼ିଦେବେ । ପାଠୁଆ ଲୋକ ନିଜର ଅହଂକାର ବା ସ୍ୱାର୍ଥଚିନ୍ତା ଛାଡ଼ିଦେବେ, ସେଥିପାଇଁ ତାଙ୍କ ସଙ୍ଗେ ସତ୍ୟାଗ୍ରହ ଦରକାର ପଡ଼ିପାରେ, ତାଙ୍କସହ ଅସହଯୋଗ କରିବାକୁ ପଡ଼ିପାରେ, ତାଙ୍କ ଅନ୍ୟାୟର ସାଥିହୋଇ ରହିବାକୁ ହେବନାହିଁ । ସେହି ସମ୍ବନ୍ଧରେ ତମେ ସବୁ କ'ଣ ବିଶ୍ୱରୁଥିବ ମୁଁ ଜାଣେ ନାହିଁ । ଏଭଳି ସତ୍ୟାଗ୍ରହ ହେଲେ ଆଗରୁ ସଂଗଠନ ଲୋଡ଼ା, ରଚନାତ୍ମକ କାମ ଦରକାର ।

ଏସବୁ କାମ ପାଇଁ ମେଳ ଓ ସାହସ ଆବଶ୍ୟକ । କର୍ମୀମାନଙ୍କର ତ୍ୟାଗ ଦେଖିଲେ ଲୋକଙ୍କର ସାହସ ହେବ । ଯଦି କର୍ମୀମାନଙ୍କର ଜମିବାଡ଼ି ନିଲାମ ହେବ ନାହିଁ, ତାଙ୍କୁ ମାଡ ହେବ ନାହିଁ, ସେ ଜେଲ ଯିବେ ନାହିଁ, ତାଙ୍କଠାରେ ଆଞ୍ଚ ଲାଗିବ ନାହିଁ, ତାହେଲେ ଲୋକେ ଏ ସବୁକୁ ଡରିବେ । ଓଲଟା ଲୋକଙ୍କ ବିଶ୍ୱାସ ତୁଟିଯିବ । କର୍ମୀମାନଙ୍କ କଷ୍ଟ ସହିବା ଆଗ ଦେଖିଲେ ଲୋକେ ସେହିବାଟେ ଯିବେ । ତେଣୁ ଲୋକଙ୍କୁ କଷ୍ଟ ମୁହଁକୁ, ମାଡ ମକଦ୍ଦମା ମୁହଁକୁ ଠେଲି ଦେବା ପୂର୍ବରୁ ନିଜେ କଷ୍ଟ କରିବା ଦରକାର । ଏହି ମତରେ ଗାନ୍ଧୀଜୀ ସତ୍ୟାଗ୍ରହ କରୁଥିଲେ ।

କର୍ମୀମାନେ ଏହିପରି ନିଜର ଶକ୍ତି ସଞ୍ଚୟ କଲା ସମୟରେ ଲୋକଙ୍କୁ କିଛି ସଂଗଠନ କାମ କରିବାକୁ କହିବା ଦରକାର । ତାହା ଦ୍ୱାରା ଲୋକଙ୍କର ତାଲିମ ହୁଏ, ପରୀକ୍ଷା ମଧ୍ୟ ହୋଇଯାଏ ; ପ୍ରକୃତରେ କେତେଦୂର ଲଢ଼ିବାକୁ ପ୍ରସ୍ତୁତ ତାହା ମଧ୍ୟ ଜଣା ପଡ଼ିଯାଏ । ନିଶା ଛାଡ଼ିବା ଏହିପରି ଏକ କାମ ହୋଇପାରେ । ଗାନ୍ଧୀ ତ ସୂତାକଟା ଓ ମିଲଲୁଗା ଛାଡ଼ିବାଟାକୁ ଏହିପରି ଏକ ସର୍ତ୍ତ କରୁଥିଲେ ।

ଏ ଉଦ୍ଦେଶ୍ୟରେ ଆଗରୁ ଏକ ସଂଗଠନ ଆବଶ୍ୟକ । କର୍ମୀମାନେ ଅଞ୍ଚଳ ବାଣ୍ଟି ନେଇ ଲୋକଙ୍କୁ ସାହସ ଦିଅନ୍ତୁ । ଗରିବ ଲୋକେ ହାଟରେ ବାଟରେ ଠକରେ ପଡ଼ୁଛନ୍ତି । ଠିକ୍ ଦାମ ମୂଲ ପାଉନାହାନ୍ତି । ମିଛରେ ଟିପଚିହ୍ନ ଦେଉଛନ୍ତି, ଜମି ବନ୍ଧା ପକାଉଛନ୍ତି ଜମି ମିଳୁଛି— ପୁଣି ବନ୍ଧା ଦେଇ ହରଉଛନ୍ତି । ଏସବୁ କାମ ବୁଝେଇ ଲୋକଙ୍କର ଶୋଷଣ ବନ୍ଦ କରନ୍ତୁ ଏବଂ ସାହସ ବଢ଼ାନ୍ତୁ ।

ଏ ଅଞ୍ଚଳର କର୍ମୀମାନେ ଭୁଲ ବୁଝିଛନ୍ତି । ଏଠାକାର ପ୍ରଶ୍ନ (୧) ଆଦିବାସୀ ଅଣ ଆଦିବାସୀ ନୁହେଁ । ଆଦିବାସୀ ଲୋକ ହ

ଆଦିବାସୀ ଲୋକଙ୍କୁ ଜୁଲମ କରୁଛନ୍ତି । ଏହା ଧନୀ-ଦରିଦ୍ର ପ୍ରଶ୍ନ । ଏହା ଟଙ୍କା ପଇସାର ସଇତାନି ଲୀଳା [୨] ଏଥିରେ କେବଳ କୁମୁଣ୍ଡୀ ଦୋଷୀ ନୁହନ୍ତି । ତେଲଙ୍ଗା ଓଡ଼ିଆ ପ୍ରଶ୍ନ ଏଠି ନାହିଁ । ବହୁତ ଓଡ଼ିଆ ଏ ସଂପର୍କରେ ଦୋଷୀ । (୩)ଆଦିବାସୀଙ୍କୁ ଅପହୃତ ଜମି ଫେରେଇ ଦେବା ଯେଉଁ ଆଇନ ଉପରେ ନିର୍ଭର କରୁଛି, ସେ ଆଇନରେ ଫାଙ୍କି ଦେବାର ବହୁତ ବାଟ ଅଛି । ସେ ଆଇନ ଠାରୁ ବଳି ଅଧିକ ଜୋରଦାର ଆଇନ ଦରକାର । ନ ଠକେଇ ଜମି କିଣି ନେଇ ଯେ ଲୋକ ବେଶୀ ଜମି ଜମା କରୁଛି ଏବଂ ତା ଫଳରେ ପାଇ ପଡ଼ଶା ଲୋକ ଉପାସ ପଡ଼ୁଛନ୍ତି ସେ ଲୋକେ ମଧ୍ୟ ଚୋର ଠକ । ଏ ଅପ୍ରିୟ ମତ ଶିକ୍ଷିତ ଓ ଧନୀଲୋକେ ବର୍ତ୍ତମାନ ସ୍ୱୀକାର କରିବାକୁ ନାରାଜ । ତାକୁ ସ୍ୱୀକାର କଲାଭଳି ଆଇନ ଓ ଶାସନ ମତ ଆବଶ୍ୟକ । (୪) କେହି କେହି ବସ୍ତୁରୁଛନ୍ତି ସତ୍ୟାଗ୍ରହ ଆରମ୍ଭ କରିଦେଲେ ନିଶାଖିଆ ଆପେଆପେ ଛାଡ଼ିଯିବ, ମଦଖିଆ କମିଯିବ । ମଦକୁ ରଖିକରି ଯେଉଁ ଆନ୍ଦୋଳନ କରାଯିବ ତାକୁ ସତ୍ୟାଗ୍ରହ କୁହାଯିବ ନାହିଁ । ସତ୍ୟାଗ୍ରହ ଶବ୍ଦର ଯେ ସ୍ରଷ୍ଟା ସେ ସତ୍ୟାଗ୍ରହ ସଙ୍ଗେ ଆତ୍ମଶୁଦ୍ଧିର ଓ ଆତ୍ମବଳର ସ୍ୱାଭାବିକ ସଂବନ୍ଧ ଉପରେ ଜୋର ଦେଇଛନ୍ତି । ଯେ ନିଶା ଖାଉଛି ତାଠାରୁ ବୁଦ୍ଧି ଓ ବିବେକର ସହ ଅନ୍ୟାୟର ପ୍ରତିରୋଧ ଆଶାକରିବା ଅସମ୍ଭବ କଥା, ବରଂ ଓଲଟା ମଦୁଆର ସାହସ ବୋଲି କିଛି ନଥାଏ, ମେଳର ଅର୍ଥ ସେ ବୁଝେ ନାହିଁ, ହିଂସା ଅହିଂସାର ବିଚାର ତା'ର ରହେ ନାହିଁ । (୫)ଆଉ ଗୋଟିଏ କଥା ମୋ ଦୃଷ୍ଟିକୁ ଭଲ ଦିଶୁ ନାହିଁ ତାହା ହେଉଛି ସରକାରୀ କାମରେ ଜଡ଼ିତ ହେବା । ଯଦି ସତ୍ୟାଗ୍ରହ ଦ୍ୱାରା ବର୍ଷ ବର୍ଷ ଧରି ସଞ୍ଚିତ ଅନ୍ୟାୟର ପ୍ରତିରୋଧ କରିବାକୁ ହେବ ତାହେଲେ ସେହିପରି ସଙ୍ଗଠନ ଓ ତ୍ୟାଗ କର୍ମୀମାନଙ୍କୁ କରିବାକୁ ପଡ଼ିବ । ଗୋଟିଏ ଉଦାହରଣ ଦେଲେ ବୁଝି ପାରିବ । ଗାଁରେ

ଗୋଟିଏ ସରକାରୀ ସ୍କୁଲ ହେଲା, କର୍ମୀ ତା'ର ପଦ କରୁ ଦାୟିତ୍ୱ ମୁଣ୍ଡାଇ ତା' ହେଲେ ତାଙ୍କୁ ଅଡୁଆରେ ପଡ଼ିବାକୁ ହେବ । କେହି ଯଦି ଖରାପ ଲୋକ ଶିକ୍ଷକ ହୋଇ ଆସେ ଏବଂ ଗାଁରେ ମନ୍ଦ କଥା ଶିଖାଏ ତାକୁ ତଡ଼ିବା କର୍ମୀ ପକ୍ଷରେ ସମ୍ଭବ ନୁହେଁ । ଲେଖା ଲେଖି କରି ତଡ୍ ଲଡ୍ ସେ ତାଙ୍କର ମନ୍ଦ କାମ ଅଧିକ ଅଧିକ କରିଯାଇ ଥାନ୍ତି ଏବଂ ଦଳ ମଧ୍ୟ ସୃଷ୍ଟି କରିଥାନ୍ତି । ସରକାରୀ ମହଲରେ କର୍ମଚାରୀ ମାନଙ୍କର ଚରିତ୍ର ପ୍ରତି ଦୃଷ୍ଟି ଦେବାପାଇଁ କୋଣସି ନିୟନ୍ତ୍ରଣ ନାହିଁ । ଦ୍ୱେଷୀ, ବ୍ୟକ୍ତିଙ୍କର ଆଜିକାଲି ମକଦ୍ଦମା କରି ପ୍ରମାଣ କରିବା ତ ସହଜ କଥା ନୁହଁ । ଉପରୁ ନିୟନ୍ତ୍ରଣ କରୁ ନଥିଲେ ଅତି କଦର୍ଯ୍ୟ କଥାମାନ ଘଟି ଚାଲୁଛି । କର୍ମୀମାନେ ତେଣୁ ସରକାରୀ ଅନୁଷ୍ଠାନର ଦାୟିତ୍ୱ ମୁଣ୍ଡାଇବା ଠିକ୍ ନୁହଁ, ସମ୍ପର୍କ ରଖି ପାରନ୍ତି । ସତ୍ୟାଗ୍ରହ ମନୋଭାବ ପାଇଁ ଅସହଯୋଗ ଆବଶ୍ୟକ । ଲୋକେ ମଧ୍ୟ ସରକାରୀ ପଇସା ବା ବୃତ୍ତି ଲୋଭରେ ପଡ଼ିଗଲେ ସହଜରେ କୌଣସି ସରକାରୀ ଅନ୍ୟାୟ ବିରୁଦ୍ଧ କାମରେ ହାତ ଦେବାକୁ କୁଣ୍ଠିତ ହୋଇଥାନ୍ତି ।

ଗୋପବନ୍ଧୁ ଚୌଧୁରୀ

ଗୋପବାବୁଙ୍କର ଏହି ମତାମତରୁ ବିଶ୍ୱନାଥ ଭଞ୍ଜଲେ ଉତ୍କଳ ଖାଦି ମଣ୍ଡଳର କାର୍ଯ୍ୟକାରୀ ସମିତିରେ ରହି ଭୂ ସତ୍ୟାଗ୍ରହ କରିବା ଠିକ୍ ହେବ ନାହିଁ, ତେଣୁ ସେ ଇସ୍ତଫା ଦେଲେ । ତାଙ୍କର ସହକର୍ମୀ ରତନ ଦାସ ଓ ସୁଧାଂଶୁ ବାବୁ ଭୂସତ୍ୟାଗ୍ରହରୁ ନିଜକୁ ଅଲଗା ରଖିଲେ । ଯା'ହେଉ ଲୋକଙ୍କ ସମସ୍ୟା ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଇ ପାରିଲା ।

ବିନୋବାଜୀ ଇତି ମଧ୍ୟରେ କେବଳ ତେଲେଙ୍ଗାନା ନୁହେଁ ସମଗ୍ର ଭାରତ ବର୍ଷରେ ଭୂମି ସମସ୍ୟା ସମ୍ପର୍କରେ ଆଲୋଚନା କରୁ

ଥାଆନ୍ତି । କିଛିଦିନ ପରେ ସେ ସମନ୍ତ ଶନ୍ତାଧାରର ଲୋକମାନଙ୍କୁ ଉତ୍ତର ପ୍ରଦେଶରେ ଅନୁଷ୍ଠିତ ହେଉଥିବା ସର୍ବୋଦୟ ସମାଜର ଅଧିବେଶନକୁ ଡାକିଲେ । ସମ୍ମିଳନୀ ପରେ ବିହାର ପ୍ରଦେଶରେ ଭୂଦାନ ପଦଯାତ୍ରା ଆରମ୍ଭ କଲେ । ଗୋବୋବାବୁ ମୂଳରୁ ଏ କାମରେ ବିନୋବାଙ୍କୁ ସମର୍ଥନ କରୁଥିଲେ, ଯୁବକଙ୍କୁ ଏ ଦିଗରେ ଅଧିକ ଦିଗ ଦର୍ଶନ ଦେବାକୁ ସେ ବିଶ୍ୱନାଥ,ମନମୋହନ ଚୌଧୁରୀ ଓ ରଙ୍ଗାଧର ଦାସ ଇତ୍ୟାଦିଙ୍କୁ ବିନୋବାଜୀଙ୍କ ପଦଯାତ୍ରାରେ ଭାଗନେବାକୁ ବିହାର ପଠାଇଲେ । ସେମାନେ କରନ୍‌ବୋଡ଼ା ଗ୍ରାମରେ ୧୪।୧୨।୫୨ ତାରିଖରେ ବିନୋବାଙ୍କୁ ସାକ୍ଷାତ୍ କଲେ ଓ ୪୫ଦିନ ରହି ବିଭିନ୍ନ ଗ୍ରାମରେ ହେଉଥିବା ସଭା ଓ ପ୍ରବଚନରେ ଯୋଗ ଦେଲେ । ବିଶ୍ୱନାଥ କୁଜେନ୍ଦ୍ରୀକୁ ଫେରି ମନେ ମନେ ସ୍ଥିର କଲେ ପ୍ରଥମ ଦିନ ମୁଁ ଲୋକଙ୍କୁ ଏ ବିଷୟ ବୁଝାଇବି, ଯାହାର ଜମି ଅଛି ସେ ଜମି ନ ଥିବା ଲୋକଙ୍କୁ କିଛି ଜମି ଦେଇ ଦେଉ ବୋଲି । ଯଦି ସେଦିନ କିଛି ଜମି ମିଳେ ତେବେ ଜଣାପିବ ଯେ ଏ ଆନ୍ଦୋଳନ ସଫଳ ହେବ । ଏହି ବିଷୟ ନେଇ ସେ କୁଜେନ୍ଦ୍ରୀରେ ଏକ ସଭା କଲେ ଓ ବୁଝାଇଲେ ଯେ ସରକାରଙ୍କୁ ଜମି ସମସ୍ୟାର ସମାଧାନ କରିବା ସମ୍ପର୍କରେ କହିବା ସଙ୍ଗେ ସଙ୍ଗେ ନିଜେ କିଛି କରିବା; ବାଇରୁ ତ ଗାଆଁର ସାଉନ୍ତା, ତାର ବେଶୀ ଜମି ଅଛି, ସେ କିଛି ଜମି ଦେଇ ଦେଉ ଗରିବ ସଉରଙ୍କୁ, ଏହିପରି ଅନ୍ୟମାନେ କିଛି କିଛି ଜମି ଦିଅନ୍ତୁ । ଲୋକଙ୍କ ମନକୁ ବୋଧେ କଥାଟା ଅପସନ୍ଦ ହେଲା ନାହିଁ । କେତେକ ଲୋକ ହୁଏତ ଭାବଥିବେ, ଆଜ୍ଞା କହୁଛନ୍ତି, ନ ଦେଲେ କଥାଟା ଅଭଦ୍ର ହେବ, ଆଉ କେତେକ ହୁଏତ କଥାର ଗୁରୁତ୍ୱ ବୁଝିଥିବେ, ଭାବଥିବେ ଏହି ଦାନ ଫଳରେ ହୁଏତ ଲୋକେ ଭଲରେ ରହିବେ । ଯା'ହେଉ ସେଦିନ ୪୨ ଏକର ଜମି ଗରିବ ଲୋକଙ୍କୁ ମିଳିବ ବୋଲି ପ୍ରତିଶ୍ରୁତି ମିଳିଲା ।

ଏକାର୍ଯ୍ୟ ସଫଳ ହେବ ବୋଲି ବିଶ୍ୱନାଥ ଗୋପବାବୁଙ୍କୁ ଖବର ପଠାଇଲେ । ବ୍ୟାପକ ଭାବେ ଏହି କାର୍ଯ୍ୟକ୍ରମ ହାତକୁ ନିଆଯିବ ବୋଲି ନେତାମାନେ ସ୍ଥିରକଲେ । ଜମି ଦାନ କରିବା ପାଇଁ ଜମି ମାଲିକ ଏକ ଦାନପତ୍ରରେ ସ୍ୱାକ୍ଷର କରିବାକୁ ପଡ଼ିଲା । ଦାନର ବିସ୍ତୃତ ତାଲିକା ମଧ୍ୟ ତିଆରି କରି ରେକର୍ଡ ରଖିବାକୁ ହେଲା । ବିଶ୍ୱନାଥ ୨ବର୍ଷ ତଳେ ଯାହା ଚିନ୍ତା କରୁଥିଲେ, ସେହିପରି ଏକ କାର୍ଯ୍ୟକ୍ରମ ସାରା ଭାରତବର୍ଷରେ ଚାଲୁଥିବାରୁ, ପୂରା ଉତ୍ସାହରେ ସେ ଗାଆଁକୁ ଗାଆଁ ବୁଲି ଲାଗିଲେ । ରାମନାଗୁଡାର ଗରଣ୍ଡା ଅଞ୍ଚଳଠାରୁ ଆରମ୍ଭ କରି, ଜେଲ ଜୀବନର ସାଥୀମାନଙ୍କ ଜନ୍ମାରେ ବୁର୍ଲା,କୋରାପୁଟ ଓ ନବରଙ୍ଗପୁର ଇତ୍ୟାଦି ଅଞ୍ଚଳରେ ଗସ୍ତକଲେ, ୧୯୫୩ ମସିହା ପ୍ରଥମାର୍ଦ୍ଧରେ ଗୋପବାବୁ ତେରବାଲି ନିକଟସ୍ଥ ଡ଼ୁମ୍ବୁରିଗେଡ଼ା ଗ୍ରାମରେ ଏକ ତାଲିମ ଶିବିର ବସାଇଥିଲେ । କୋରାପୁଟର ବିଭିନ୍ନ ଅଞ୍ଚଳରୁ କର୍ମୀମାନେ ଆସି ସେହି ଶିବିରରେ ଯୋଗ ଦେଇଥିଲେ । ମାଳ ଅପା ସେତେବେଳକୁ ଡ଼ୁମ୍ବୁରିଗେଡ଼ା ଗାଆଁରେ ନିଜର ବ୍ୟକ୍ତିତ୍ୱ ଦ୍ୱାରା ଅନେକ ଲୋକଙ୍କୁ ଗଠନମୂଳକ କାର୍ଯ୍ୟ ପ୍ରତି ଆକୃଷ୍ଟ କରି ସାରିଥାଆନ୍ତି । କର୍ମୀ ତାଲିମ ଶିବିରରେ ଯେଉଁମାନେ ଯୋଗଦେଲେ, ସେମାନେ ସ୍ୱେଚ୍ଛାସେବୀ, ତାଙ୍କୁ କିଛି ଭତ୍ତା ଦେବାର ବ୍ୟବସ୍ଥା ନଥିଲା । ଶିବିରର ୫୦ ଜଣ ଶିକ୍ଷାର୍ଥୀଙ୍କ ମଧ୍ୟରୁ ୧୦।୧୨ ଜଣ ମହିଳା କର୍ମୀ ଥିଲେ । ତନ୍ମଧ୍ୟରୁ କେତେକ ଏପର୍ଯ୍ୟନ୍ତ ରଚନାତ୍ମକ କାର୍ଯ୍ୟରେ ସକ୍ରିୟ ସହଯୋଗ କରୁଛନ୍ତି । ସେମାନେ କୌଣସି ଅନୁଷ୍ଠାନରୁ ଦରମା ନଅନ୍ତି ନାହିଁ, କିନ୍ତୁ ସମାଜସେବୀ ଭାବେ ଆଗେ ବାହାରି ପଡ଼ନ୍ତି ।

ଶ୍ରୀରାଧାକୃଷ୍ଣ ବିଶ୍ୱାସରାୟ ମନ୍ତ୍ରୀ ଥିଲା ବେଳେ ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କୁ ଶିକ୍ଷକତା ଓ ଅନ୍ୟାନ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ଚାକିରୀ

ରେ ନିଯୁକ୍ତ ହେବାର ବ୍ୟବସ୍ଥା କରିଥିଲେ । ତେଣୁ ନବରଙ୍ଗପୁର, ଜୟପୁର, ମାଲକାନଗିରି ଅଞ୍ଚଳରେ ନୂତନକର୍ମୀ ସୃଷ୍ଟି କରିବା ଆବଶ୍ୟକ ହେଲା । ମହମ୍ମଦ ବାଜା ଓ ଅନ୍ୟ କେତେକ କର୍ମୀ ନବରଙ୍ଗପୁରରେ ଭୂଦାନପତ୍ର ଜରିଆରେ ଜମି ସଂଗ୍ରହ କଲେ । ବାଜାବାବୁ ଜାତୀୟ ଆନ୍ଦୋଳନରେ ଓ ଜେଲରେ ବିଶ୍ୱନାଥଙ୍କ ସାଙ୍ଗରେ, ୧୯୩୮ ମସିହାରୁ ସେ ସକ୍ରିୟ କଂଗ୍ରେସକର୍ମୀ, ଅବିବାହିତ ରହିଲେ, ପିଲାପିଲାର ଜଞ୍ଜାଳ ନାହିଁ, ଅଲେଖ ମତବାଦର ଜଣେ ବଡ଼ ସମର୍ଥକ, ଗ୍ରାମବାସୀଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କ ରଖିଥାଆନ୍ତି, କିନ୍ତୁ ସାଂସାରିକ ବ୍ୟାପାରରେ ବିଶେଷ ଚତୁରତା ଦେଖାଇ ନପାରି ଅପଦସ୍ଥ ମଧ୍ୟ ହୋଇଛନ୍ତି, ସୁବିଧାବାଦୀ ତଥାକଥିତ ସମାଜ ସେବୀ ମାନଙ୍କଦ୍ୱାରା ।

୧୯୫୪ ମସିହାରେ ଭୂଦାନ ଯଜ୍ଞ ସମିତି ଆଇନ ହେଲା । ତା ପୂର୍ବରୁ ଭୂଦାନ କାର୍ଯ୍ୟ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟପରି ନୈତିକ ଆଧାରିତ କାର୍ଯ୍ୟଭାବେ ଆରମ୍ଭ ହୋଇଥିଲା । ତା'ର ଅର୍ଥ, ସରକାରଙ୍କ ସ୍ୱୀକୃତ ଥାଉ ଅବା ନଥାଉ ଗ୍ରାମ ଲୋକେ ଭୂଦାନ କର୍ମୀମାନଙ୍କ ମଧ୍ୟସ୍ଥତାରେ ନିଜ ଜମିର ପୁନର୍ବଣ୍ଟନ କରୁଥିଲେ । ଭୂଦାନ କାର୍ଯ୍ୟରେ ଅଧିକ ସମୟ ଦେବା ଫଳରେ ବିଶ୍ୱନାଥ କ୍ରମେ ଖଦୀ ସଂଗଠନ କାର୍ଯ୍ୟ ଠାରୁ ଦୂରେଇଗଲେ । ଯୁଜ୍ ରୋଗର ପ୍ରାଦୁ-ର୍ଭାବ ଆଉ ଆଗପରି କୋରାପୁଟ ଆଦିବାସୀ ମଧ୍ୟରେ ରହିଲା ନାହିଁ, କର୍ମୀମାନଙ୍କ ନିରନ୍ତର ଆକ୍ରମଣ ଫଳରେ । ୧୯୫୩ ମସିହାରେ ଭାଗଚାଷୀ ଆଇନର ସାରକଥା ବିଶ୍ୱନାଥ ଓ ତାଙ୍କର ସହକର୍ମୀମାନେ ଚାଷୀମାନଙ୍କୁ ବୁଝାଇଲେ । କୋରାପୁଟ ଜିଲାର ଯେଉଁ କେତେକ ଗ୍ରାମରେ କୁଷ୍ଠରୋଗର ବ୍ୟାପକତା ଦେଖାଯାଇଥିଲା, ସେ ଅଞ୍ଚଳ ପାଇଁ କିଛି କରିପାରି ପାରିବେକି ନା ତାହା ମଧ୍ୟ ଗମ୍ଭୀରଭାବେ

ଚିନ୍ତା କଲେ । ଏହି ସମୟରେ ସେ ଗୟା ସର୍ବୋଦୟ ସମ୍ମିଳନୀ ଯାଇଥିଲେ । ୧୯୫୪ ମସିହାରେ ଆଲ୍ଲାହାବାଦ ସଙ୍ଗମରେ କୁମ୍ଭ-ମେଳା ହୋଇଥିଲା । ସେ ମେଳାକୁ ଯାଇଥିଲେ ନିଜର ଜାଣିବାର ଇଚ୍ଛା ଚରିତାର୍ଥ କରିବାକୁ । ସେଠାରେ କେତେଦିନ ଭିନ୍ନ ସାଧୁ ମାନଙ୍କ ପ୍ରବଚନ ଶୁଣିଲେ । କେତେକ ପ୍ରବଚନରୁ ସେ ଅନୁଭବ କଲେ ଯେ ସାଧକମାନେ ଯାହା ନିଜେ ଅଭ୍ୟାସ କରିଥାଆନ୍ତି ଓ ଅନୁଭବ କରିଥାଆନ୍ତି ତାହା ପ୍ରକାଶ କରନ୍ତି । ସାଧାରଣ ଲୋକେ ତାହାକୁ ତାତ୍ତ୍ୱିକ ଆଲୋଚନା ବୋଲି ଭାବି ପାରନ୍ତି, କିନ୍ତୁ ଯେଉଁ-ମାନେ ସେ ମାର୍ଗରେ ଗମିଛନ୍ତି ସେମାନେ ଜାଣନ୍ତି, ତାହା ଏକ ବ୍ୟବହାରିକ ଜ୍ଞାନ, ପରୀକ୍ଷାସିଦ୍ଧ ଜ୍ଞାନ ।

ମେଳାରୁ ଫେରି ସେ ପୁଣି ଭୂଦାନ କାମରେ ଲାଗିଲେ । ଗାଆଁକୁ ଗାଆଁ ପାଦରେ ଚାଲି ଚାଲି ଯାଇ ଗରିବ ଲୋକଙ୍କ ପାଇଁ ଜମି ମାଗିବା ଓ କହିବା "ଗରିବ ଲୋକଙ୍କୁ କେବଳ ଦୟାରେ କିଛି ଜମି ଦେଇ ଦେବା ଏହି ଯଜ୍ଞର ଉଦ୍ଦେଶ୍ୟ ନୁହେଁ, ସାମାଜିକ ଦାୟିତ୍ୱ ଦୃଷ୍ଟିରୁ ଯାହାର କିଛି ନାହିଁ ତା'ପାଇଁ କିଛି ବ୍ୟବସ୍ଥା କରିବାକୁ ହେବ ।"

୧୯୫୫ ଜାନୁଆରୀରେ ବିନୋବା ପଶ୍ଚିମବଙ୍ଗରୁ ଓଡ଼ିଶା ଆସିଲେ, କୋରାପୁଟରେ ପହଞ୍ଚିଲେ ଖ୍ରୀଷ୍ଟାବ୍ଦର ଶେଷ ଭାଗକୁ । ସେ କୋରାପୁଟ ଜିଲାରେ ୪ମାସ ଗସ୍ତ କଲେ । ବୋଧହୁଏ କୌଣସି ଏକ ଜିଲାରେ ବିନୋବାଜୀଙ୍କର ଏହା ସବୁଠାରୁ ଅଧିକ ସମୟ ଗସ୍ତ । ଆଦିବାସୀର ସରଳ ଜୀବନ ଯାତ୍ରା ସମ୍ପର୍କରେ ଏହି ଯାତ୍ରା ତାଙ୍କୁ ଅଧିକ ସଚେତନ କରିଥିଲା । ବିଶ୍ୱନାଥ ଓ ତାଙ୍କର ସହକର୍ମୀମାନେ ଶତାଧିକ ଗ୍ରାମର ଲୋକଙ୍କୁ ଏପରି ଉତ୍ସାହିତ କରି ଦେଇଥିଲେ ଯେ ସେମାନେ ନିଜ ଜମିର ମାଲିକାନା ସତ୍ତ୍ୱ ଛାଡ଼ି ଦେବାକୁ ଇଚ୍ଛା ପ୍ରକାଶ

କଲେ । ଗ୍ରାମର ଲୋକମାନଙ୍କ ସହଯୋଗରେ କର୍ମୀମାନେ ଗ୍ରାମବାସୀଙ୍କ ମଧ୍ୟରେ ଜମିକୁ ଯେପରି ବଣ୍ଟନ କରିଦେବେ ସେଥିରେ ସେମାନେ ସନ୍ତୁଷ୍ଟ ହେବେ ବୋଲି ମତ ଦେଇଥିଲେ । ଏହାକୁ ଗ୍ରାମଦାନ ବୋଲି ଅଭିମତ କରିଗଲା । ବିନୋବା କୋରାପୁଟ ଗସ୍ତର ଦ୍ୱିତୀୟ ସପ୍ତାହରେ କୁଜେନ୍ଦ୍ରୀରେ ପହଞ୍ଚିଲେ । ସେଠାରେ ଗଠନ ମୂଳକ କାର୍ଯ୍ୟ ହେଉଥିଲା ବୋଲି ଗୋଟିବାକୁ ସେଠାରେ ବିନୋବାଙ୍କୁ ୨ ଦିନ ରଖାଇଲେ । ପୁଣି ପ୍ରତ୍ୟାବର୍ତ୍ତନ ସମୟରେ କୁଜେନ୍ଦ୍ରୀରେ ୭ ଦିନ ରହିଲେ । ସେଠାରେ ଭାରତର ବିଭିନ୍ନ ଆଞ୍ଚଳରୁ ଆସିଥିବା ରଚନାତ୍ମକ କର୍ମୀମାନଙ୍କର ସମ୍ମିଳନୀ ହେଲା । ଭାରତର ବିଭିନ୍ନ ପ୍ରାନ୍ତରୁ ଗାନ୍ଧିବାଦୀ ନେତାମାନେ ଆସିଲେ । ଆସିଥିବା ଲୋକେ ସ୍ଥାନୀୟ ଆଦିବାସୀଙ୍କର ଦାନ ଗୁଣର ମହାନୀୟତା ଦେଖି ଆଶ୍ଚର୍ଯ୍ୟ ହୋଇଲେ । ଯାହାର ଭୂମି ନାହିଁ, ସେ କହିଲା, ମୁଁ ଶ୍ରମଦାନ କରିବି, ଗୋଟିଏ କନିଷ ଦେବ । ସେହି ଲୋକମତକୁ ସଙ୍ଗଠିତ ରୂପଦେବା ଓ କୋରାପୁଟର ୭ଶହରୁ ଅଧିକ ଗ୍ରାମଦାନ ଗ୍ରାମରେ ଗ୍ରାମ ନିର୍ମାଣ କରିବା ସମ୍ପର୍କରେ ଆଲୋଚନା ହେଲା । ସିଦ୍ଧାନ୍ତ ହେଲା ସର୍ବ ସେବା ସଂଘ ନେତୃତ୍ୱରେ ଆନ୍ନାସାହେବ ସହସ୍ରବୁଦ୍ଧେ ଏ କାର୍ଯ୍ୟକ୍ରମ ହାତକୁ ନେବେ । ଆର୍ଥିକ ସାହାଯ୍ୟ ସରକାରୀ ସଂସ୍ଥା, ଖଦୀ କମିଶନ ଓ ବେସରକାରୀ ଗାନ୍ଧିବାଦୀ ଅନୁଷ୍ଠାନରୁ ନିଆଯିବ ବୋଲି ଆନ୍ନା ସାହେବଙ୍କୁ ଅନୁମତି ଦିଆଗଲା । ବିନୋବାଙ୍କ ଗୁରୁତ୍ୱ ଆରୋପ, କୋରାପୁଟ ଲୋକଙ୍କ ଭାବପ୍ରବଣ ସମର୍ଥନ, ନବକୃଷ୍ଣ ଚୌଧୁରୀଙ୍କ ଶାସନକାଳ ଓ ସର୍ବଭାରତୀୟ ଅନୁଷ୍ଠାନ ଗୁଡ଼ିକର ପ୍ରତ୍ୟକ୍ଷ ସହ-ଯୋଗ ଆନ୍ନା ସାହେବଙ୍କୁ କୋରାପୁଟରେ ଏକ ନୂତନ ପରୀକ୍ଷା କରିବା ପାଇଁ ବ୍ୟାପକ ସୁଯୋଗ ଦେଲା ।

ଯେଉଁମାନେ ଆନ୍ନା ସାହେବଙ୍କ ଅନୁଷ୍ଠାନରେ ରହିଲେ

ଗାନ୍ଧିଘର, କୂଅ, ପୋଖରୀ, କ୍ଷୁଦ୍ର ଜଳସେଚନ ଯୋଜନା ନିର୍ମାଣ ଗ୍ରାମ୍ୟଶିଳ୍ପର ପୁନରୁତ୍ଥାନ, ଲାଖ ଏଣ୍ଡି ଓ ମହୁଚାଷ, ଗ୍ରାମଟାଙ୍କି ଓ ଗ୍ରାମକୋଠ ନିର୍ମାଣ ଇତ୍ୟାଦି କାର୍ଯ୍ୟ କରୁଥିଲେ । ମଜୁରି ଦେଇ ସୂତାକଟା ଓ ଲୁଗାବୁଣା କାମ କରାଉଥିଲେ । ଜମି ସୁଧାର କରିବା ପାଇଁ ନିଜେ ଜମି ଛଡ଼ାଉଥିଲେ ଓ ହିଡ ବନ୍ଧାଉଥିଲେ । ଚକବନ୍ଦୀ କାର୍ଯ୍ୟକ୍ରମ ପରୀକ୍ଷାମୂଳକ ଭାବେ ଗରଣ୍ଡା ଗ୍ରାମରେ ଆରମ୍ଭ କଲେ । ଅନ୍ୟ କେତେକ ଗ୍ରାମରେ ଫଳଗଛ ଓ କାଜୁବାଦାମ ଗଛ କରାଇଲେ ।

ବିଶ୍ୱନାଥ ୧୯୫୫ ଅକ୍ଟୋବର ପର୍ଯ୍ୟନ୍ତ ବିନୋବାଙ୍କ ପଦ-ଯାତ୍ରାର ଆୟୋଜନ କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଜିଲ୍ଲାର ସାମୁହିକ ଦାନ ପାଇବାରେ ସକ୍ଷମ ହେଲେ । ତା'ପରେ ଗୋପ-ବାବୁଙ୍କ ସହ ଗୁଣୁପୁର ରାୟଗଡ଼ା ଅଞ୍ଚଳରେ ମାସେ ବୁଲିଲେ ।

ଗୋପବାବୁ ଅନୁଭବ କଲେ କର୍ମୀକୁ ପଦପ୍ରାପ୍ତି ଲାଳସାରେ ବାନ୍ଧି ରଖାଯାଇ ପାରେନାହିଁ, ତାକୁ ଉଦ୍‌ବୁଦ୍ଧ କରିବାକୁ ହେବ ପରୋକ୍ଷ ଭାବେ, ସେ ନିଜେ ଜାଣିବ ଯେ, ସମାଜ ସେବାହିଁ ମୋର ଲକ୍ଷ୍ୟ, ସେଥିରୁ କିଛି ଫଳ ମିଳୁ, ସମ୍ମାନ ମିଳୁ ଏସବୁ ପଛରେ ନ ଗୋଡ଼ାଇ କାମ କଲେ ନିଶ୍ଚେ ଗ୍ରାମବାସୀ ଉପକୃତ ହେବେ । କିନ୍ତୁ ଆନ୍ନା ସାହେବ ଏ ବିଚାର କଲେ କର୍ମୀ ଯଦି ଯଥେଷ୍ଟ ପଇସା ନ ପାଇବ, ତେବେ ତା'ର କାମ କରିବାକୁ ଆଗ୍ରହ ହେବନାହିଁ । ତଥାପି ଗୋପବାବୁ ଓ ବିଶ୍ୱନାଥ ଆନ୍ନା ସାହେବଙ୍କ ମତରେ ପ୍ରକାଶ୍ୟ ବିରୋଧ କଲେ ନାହିଁ, ସେମାନେ ଭାବିଲେ ଏକ ବିଶୃଙ୍ଖଳ ବ୍ୟବସ୍ଥାରେ ହଠାତ୍ ପ୍ରକାଶ୍ୟ ବିରୋଧ କରିବା କିମ୍ବା ବିରୋଧାତ୍ମକ ମନୋବୃତ୍ତି ନେବା ଠିକ୍ ହେବନାହିଁ । ଆନ୍ନା ସାହେବ ଗଠନ ମୂଳକ କର୍ମୀଙ୍କୁ ନିଯୁକ୍ତି ଦେଇପାରି ନଥିଲେ । ତେଣୁ ଯେଉଁ କର୍ମୀ-ମାନେ ଆନ୍ନାସାହେବଙ୍କ ସଂସ୍ଥାରେ ଚାକିରି ନପାଇଲେ, ସେମାନଙ୍କୁ

ଗୋପବାବୁ ବିଶ୍ୱନାଥଙ୍କ ନେତୃତ୍ୱରେ କାର୍ଯ୍ୟ କରିବାକୁ ସୁଯୋଗ ଦେଲେ । ଗୋପବାବୁ କହିଲେ "ଆଶ୍ରମ କର୍ମୀମାନଙ୍କୁ ସରକାରୀ କର୍ମଚାରୀଙ୍କ ପରି ସୁବିଧାବାଦୀ କର୍ମଚାରୀ ଦଳରେ ପରିଣତ ନକରି ଲୋକଙ୍କ ସମର୍ଥନ ଓ ଭରସାରେ ଛାଡ଼ିଦେବା ଉଚିତ୍ । ସାମାନ୍ୟ ଭତ୍ତା ଦେବା ଉଚିତ୍ ।" ସେମାନଙ୍କ ସମ୍ମାନ ବଜାୟ ରଖିବାପାଇଁ ତାଙ୍କୁ ନିଧିମୁକ୍ତ କର୍ମୀ ବୋଲି ଆଖ୍ୟା ଦେଲେ । ପ୍ରକୃତରେ ସେ କର୍ମୀମାନେ ଧନ ଲୋଭରୁ ମୁକ୍ତ ହୋଇ ନଥିଲେ । ସେମାନେ ଭୂଦାନ ଯଜ୍ଞ ସମିତି ସହ ସମ୍ପର୍କ ରଖିଲେ, ସର୍ବୋଦୟ ସାହିତ୍ୟ ବିକ୍ରି କଲେ, ଖଦିମଣ୍ଡଳ, ନବଜୀବନମଣ୍ଡଳ ସହ ସମ୍ପର୍କ ରଖିଲେ । କସ୍ତୁରବା ସ୍ମାରକନିଧିର କର୍ମୀମାନେ ନିଜର ପୁରାତନ ଆଶ୍ରମ ଛାଡ଼ି ଦେଲେ ମଧ୍ୟ ପୁରାତନ ଲୋକମାନଙ୍କ ଉପରେ ଖାଦ୍ୟପେୟ ପାଇଁ ନିର୍ଭର କରିବାକୁ ବାଧ୍ୟ ହେଲେ । ସେମାନେ ଗ୍ରାମଦାନୀ ଗ୍ରାମରେ ଜମି ବାଂଟିଲେ, ଗ୍ରାମସଭା ଗଢ଼ିଲେ, ଗ୍ରାମପାଣ୍ଠି ଗଠନ କଲେ ଓ ଅନ୍ୟାନ୍ୟ ଗ୍ରାମରେ ଗ୍ରାମଦାନ କଲେ । ବିନୋବାଜୀ ଓଡ଼ିଶା ଛାଡ଼ିବା ପୂର୍ବରୁ ଭୂଦାନ ଯଜ୍ଞ ଆଇନ୍ କାର୍ଯ୍ୟକାରୀ ହୋଇଗଲା । ପ୍ରାଦେଶିକ ଗାନ୍ଧି ସ୍ମାରକ ନିଧି ପକ୍ଷରୁ ଭୂଦାନ ଯଜ୍ଞ ସମିତିକୁ ଆର୍ଥିକ ସାହାଯ୍ୟ ଦିଆଯାଉଥିଲା । ଗ୍ରାମଦାନୀ ଗ୍ରାମରେ ଭୂମିବଣ୍ଟନ ପାଇଁ ୪ଜଣ ଅମୀନ ଭୂଦାନ ଯଜ୍ଞ ସମିତି ପକ୍ଷରୁ ପଠାଗଲା । ଗାଆଁ ଲୋକଙ୍କ ସଭା ଡକାଯାଇ କାହା ଜମିରୁ କେତେ ଅଂଶ କାହାକୁ ଦିଆଯିବ ତାହା ସ୍ଥିର ହେଉଥିଲା, ଅମୀନମାନେ ପ୍ରତିଷ୍ଠିତ କର୍ମୀମାନଙ୍କ ସହ ଗାଆଁକୁ ଯାଉଥିଲେ ଏହାକୁ କାର୍ଯ୍ୟକାରୀ କରାଇବାକୁ ।

ଅଳ୍ପଦିନ ମଧ୍ୟରେ ଆଶାସାହେବ କର୍ମୀଙ୍କ ଓ ଗୋପବାବୁଙ୍କ କର୍ମୀମାନଙ୍କ ଭିତରେ ପାର୍ଥକ୍ୟ ଦେଖାଗଲା । ଜଣେ ଅଧିକ ପଇସା ଖର୍ଚ୍ଚ କରିପାରିବା ଅବସ୍ଥାରେ ଅଛି, ଅନ୍ୟ ଜଣେ ସ୍ୱେଚ୍ଛାକୃତ

ଦାରିଦ୍ର୍ୟ ନାମକ ଗାତ ମଧ୍ୟରେ ଦିନ କାଟୁଛନ୍ତି । ଆଲ୍ମା ସାହେବ ଆଦିବାସୀଙ୍କ ମଙ୍ଗଳ କାମନା କରି ସର୍ବଦା କାର୍ଯ୍ୟ କରୁଥିଲେ । କିନ୍ତୁ ଆଦିବାସୀ ମାନଙ୍କର ନିଜର ମତ କଣ ତାହା ପ୍ରାପ୍ତ ବୁଝି ପାରିଲେ ନାହିଁ । ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । କୋରାପୁଟର ଜଙ୍ଗଲ ଓ ପାହାଡ଼ିଆ ଅଞ୍ଚଳରେ ଆଦିବାସୀମାନେ ଝରଣା ଗୁଡ଼ିକୁ ଅତି ଅଳ୍ପ ଖର୍ଚ୍ଚରେ ବନ୍ଧ କରି ଜଳସେଚନ କରିପାରୁଥିଲେ । ଆଲ୍ମାସାହେବଙ୍କ ସହ ଯେଉଁ ଇଂଜିନିୟର୍ ମାନେ ଆସିଲେ, ସେମାନେ ଆଜକାଲିର M.I.P. ବା କ୍ଷୁଦ୍ର ଜଳସେଚନ ଯୋଜନା ପରି ସ୍ଥାୟୀ ବ୍ୟବସ୍ଥା କରିବାକୁ ଚେଷ୍ଟାକଲେ । ତାହା ବନ୍ଧର ଉପର ମୁଣ୍ଡରେ ପଟୁ ଜମ କରି ପୋତିଦେଲା ଅବା କେଉଁବର୍ଷ ଅତ୍ୟଧିକ ବୃଷ୍ଟି ଯୋଗୁ ଜଳଭଣ୍ଡାର ଭାଂଗିଗଲା । ଆଦିବାସୀମାନଙ୍କ ନାଳ ଜଳସେଚନ ଅତ୍ୟଧିକ ଅଞ୍ଚଳରେ ପାଣି ମଡ଼ାଇ ପାରୁ ନଥିଲା, ପାଣିର ଅପବ୍ୟୟ ହେଉଥିଲା କିନ୍ତୁ ଟଙ୍କାର ଅପବ୍ୟୟ ହେଉନଥିଲା । ଯେଉଁଠାରେ ଇଂଜିନିୟର ମାନଙ୍କର ବନ୍ଧ ପୋତି ହୋଇଗଲା ବା ଭାଂଗିଗଲା, ସେଠାରେ କେବଳ ଟଂଙ୍କା ବରବାଦ ହେଲା ତାହା ନୁହେଁ, ଆଦିବାସୀମାନେ ତଥାକଥିତ ଶିକ୍ଷିତ ଲୋକ-ମାନଙ୍କ ବ୍ୟବହାର ଦେଖି ହସିଲେ ।

ଭାରତରେ ଗ୍ରାମ୍ୟ ଅର୍ଥନୀତିର ପୁନର୍ଗଠନ କାର୍ଯ୍ୟ ପୂର୍ବରୁ ହୋଇ ନଥିଲା କହିଲେ ଚଳେ । ଆଲ୍ମାସାହେବ ବ୍ୟାପକ ଗ୍ରାମ ନିର୍ମାଣ କାର୍ଯ୍ୟରେ ଅଭିଜ୍ଞତା ହାସଲ କରି ନଥିଲେ । କ୍ରମେ ସର-କାରଙ୍କ ପକ୍ଷରୁ ଗୋଷ୍ଠୀ ଉନ୍ନୟନ ବ୍ଲକ୍ ପଦ୍ଧତିର ପ୍ରଚଳନ କରାଗଲା ଓ ଗୋଟିଏ ବ୍ଲକ୍ ପରୀକ୍ଷାମୂଳକ ଭାବେ ଆଲ୍ମାସାହେବଙ୍କୁ ଦିଆଗଲା । ଯେଉଁ ଗ୍ରାମଦାନୀ ଗ୍ରାମମାନଙ୍କରେ ସେ କାମ କରୁଥିଲେ ତା'ର ଚାରିଆଡେ ବ୍ଲକ୍ ଜରିଆରେ କାମ ଚାଲୁଥିଲା । ବ୍ୟାପକ ପଇସା-ପତ୍ର ବଣ୍ଟାହେଲା ସରକାରୀ ସଭ୍ୟମାନଙ୍କ ଜରିଆରେ, ଆଦିବାସୀ

ନାମରେ ତାହା ଅଣଆଦିବାସୀ ଓ ଶୋଷକ ମାନଙ୍କ ହାତକୁ ଗଲା । ୧୯୫୫ରେ ବିଶ୍ୱନାଥ ବାବୁ ସର୍ବୋଦୟ ଓ ଭୂଦାନ କାର୍ଯ୍ୟର ସଂଯୋଜକ ଭାବରେ କାମରେ ରହିଥିଲେ । ବିନୋବାଙ୍କ ଗସ୍ତ ପରେ ଆଚାର୍ଯ୍ୟଦେବ ଯେଉଁ ନିର୍ମାଣ କାର୍ଯ୍ୟ କଲେ, ସେତେବେଳେ ବିଶ୍ୱନାଥ ଆଉ ସଂଯୋଜକ ପଦରେ ରହିବାକୁ ଇଚ୍ଛା କଲେ ନାହିଁ । ଆଚାର୍ଯ୍ୟଦେବଙ୍କୁ ବିଶ୍ୱନାଥ ଯଥା ସମ୍ଭବ ସହଯୋଗ ଦେଉଥିଲେ, ତାଙ୍କୁ ସମ୍ମାନ ଦେଉଥିଲେ, କିନ୍ତୁ ତାଙ୍କ ବକ୍ତବ୍ୟକୁ ଅନ୍ତଃକରଣରେ ସମର୍ଥନ କରିପାରୁନଥିଲେ । ଆଚାର୍ଯ୍ୟ ବହୁ ସଂଖ୍ୟକ ଶିକ୍ଷିତ ଯୁବକ କର୍ମୀ ଓ ସାଧାରଣ କର୍ମୀଙ୍କୁ ପାଇଥିଲେ ମଧ୍ୟ ତାଙ୍କର ବ୍ୟବସ୍ଥାରେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । କର୍ମୀମାନଙ୍କର ଅଦକ୍ଷତା, ଗାଆଁକୁ ଗାଆଁ ଭେଦ ଦିବାର ଢଙ୍ଗ, ଲୋକଙ୍କ ଭିତରେ ଏକାକାର ହେବାର ଅଭାବ ଇତ୍ୟାଦି ନଥିଲେ କମ୍ପା ସୃଷ୍ଟି ହୋଇ ପାରିଲନାହିଁ । ସେ ଗୋପବାବୁ ଓ ବିଶ୍ୱନାଥଙ୍କୁ ସକ୍ରିୟ ସହଯୋଗ ଦେବାପାଇଁ ବାଧ କଲେ ନାହିଁ । ଗାନ୍ଧିଜୀ ହୋଇଥିଲେ, ବୋଧେ ସହମତ ନ ହୋଇଥିବା ଲୋକଙ୍କୁ ପଥର ଡାକ ତା'ର ମତ ବୁଝିବାକୁ ଚେଷ୍ଟା କରି ଥାଆନ୍ତେ, ସତ୍ୟ ଅହିଂସାର ସୀମା ଭିତରେ ମତ ବିନିମୟ କରି ଥାଆନ୍ତେ । କିନ୍ତୁ ଗାନ୍ଧିବାଦର ପ୍ରବକ୍ତାମାନେ ମତ ବିନିମୟ କଲେ ନାହିଁ ।

କଏ ଶିକାର ହେଲା, ସତ୍ୟ ଓ ଅହିଂସା, କାହାର କ୍ଷତି ହେଲା ? ଆଦିବାସୀର । ଏହି ସିଦ୍ଧାନ୍ତରେ ପହଞ୍ଚିବା ଦୁଃଖପ୍ରଦ ହୋଇପାରେ, କିନ୍ତୁ ପରବର୍ତ୍ତୀ ଘଟଣା ବଳୀରୁ ପ୍ରମାଣିତ ହେଲା ଯେ ବିନୋବାଜୀଙ୍କ ସମର୍ଥନରେ ଗୋପବନ୍ଧୁ ଚୌଧୁରୀଙ୍କ ସହାୟରେ, ଆଚାର୍ଯ୍ୟଦେବଙ୍କ ଅଧିନାୟକତ୍ୱରେ ଗ୍ରାମୋନ୍ନତିର ଯେଉଁ ବ୍ୟାପକ ପରୀକ୍ଷା ବେସରକାରୀ ସ୍ତରରେ ଆରମ୍ଭ ହୋଇଥିଲା ତାହା ସମ୍ପୂର୍ଣ୍ଣ ସଫଳ ହେଲା ନାହିଁ । ଅନ୍ୟ ମହାଶକ୍ତିର ଅବହେଳିତ ଜିଲ୍ଲାପର

ଝିଅ ବୁଝି କର୍ମୀ । ଗାନ୍ଧି ଓ ବିନୋବାଙ୍କ ଦର୍ଶନ ସହ ଘନିଷ୍ଠଭାବେ ପରିଚିତ । ଗୋପବାବୁ ନିଜେ ବିନୋବାଙ୍କ ପଦଯାତ୍ରା ପରେ କିଛି ଦିନ କୋରାପୁଟ ଜିଲ୍ଲାରେ ସଙ୍ଗଠନ କାର୍ଯ୍ୟ କରିଥିଲେ । କିନ୍ତୁ ଆନ୍ନା ସାହେବଙ୍କ ଉପରେ ବିଶ୍ୱାସ ରଖି କୋରାପୁଟରେ ନିଜେ ସ୍ଥାୟୀଭାବେ ରହିଥିଲେ । ୧୯୫୬ ମସିହା ଶେଷରେ ନବକୃଷ୍ଣ ଚୌଧୁରୀ ଶାସନ କାଳରୁ ଚାଲି ଯାଇଥିଲେ । ତାଙ୍କ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ଡ. ହରେକୃଷ୍ଣ ମହତାବ ଭୂଦାନକୁ ଦାରିଦ୍ର୍ୟର ବନ୍ଧନ ବୋଲି ବର୍ଣ୍ଣୁଥିଲେ, ତେଣୁ ତାଙ୍କର ଏ ପ୍ରସ୍ଥା ପ୍ରତି ସମର୍ଥନ ନଥିଲା ।

ଗୋପବାବୁ ୧୯୫୭ ମସିହାରେ ଶେଷଥର ପାଇଁ କୋରା-ପୁଟ ଯାଇଥିଲେ ଗ୍ରାମ ପୁନର୍ଗଠନ କାର୍ଯ୍ୟ କିପରି ଚାଲିଛି ତା'ର ପରୀକ୍ଷା କରିବାକୁ । ସେ ପ୍ରାୟ ୧୫ଦିନ ରହିଲେ ଓ ଜିଲ୍ଲାର ଅଧିକାଂଶ ଗ୍ରାମଦାନୀ ଗାଆଁ ବୁଲି ନିରୀକ୍ଷଣ କଲେ । ଦେଶ ମିଶ୍ରଣ ପୂର୍ବରୁ କୋରାପୁଟ ସହ ତାଙ୍କର ସମ୍ପର୍କ, ବିନୋବାଙ୍କୁ କୋରାପୁଟ ସହ ସମ୍ପୃକ୍ତ କରିଥିଲେ ଏକ ମହତ୍ତର ଶକ୍ତିର ଆବାହନ କରିବାକୁ ବିନୋବା ନିଜେ ସାରା ଭାରତ ବୁଲିବା ଲକ୍ଷ୍ୟରେ ଥିଲେ । ଗୋପ ବାବୁ ଜାଣିଲେ ଯେ ଗ୍ରାମ ପୁନର୍ଗଠନ କାର୍ଯ୍ୟ ବିଫଳ ହୋଇଛି । କୋରାପୁଟରୁ ଫେରିବାର ଅଳ୍ପଦିନ ପରେ ତାଙ୍କର ଦେହାନ୍ତ ହୋଇଗଲା ।

ବିଶ୍ୱନାଥ ନିଜର ଗୁରୁଙ୍କୁ ହରାଇଲେ । ତାଙ୍କର ସ୍ମୃତିରେ ସେ ସେହିଦିନୁ ଲୁଣ ଖାଇବା ଛାଡ଼ି ଦେଲେ ।

# ସପ୍ତର୍ଷି ମଣ୍ଡଳର ଧ୍ରୁବତାରା

କୋରାପୁଟର ଘନ ଜଙ୍ଗଲ ଓ କୁଅଁକୁଅଁକା ପାହାଡ଼ ଭିତରେ ଯେଉଁ କେତେଜଣ ସାଧୁ ପୁରୁଷ ଆଦିବାସୀମାନଙ୍କ ସେବାରେ ଜୀବନ କଟାଇଲେ ତାଙ୍କ ସମ୍ପର୍କରେ ଆଲୋଚନା ନ ହେଲେ ବିଶ୍ୱନାଥଙ୍କ ଜୀବନୀ ଅପୂର୍ଣ୍ଣ ରହିଯିବ । ଏମାନଙ୍କ ଭିତରେ ଭିନ୍ନ ଧର୍ମର, ଭିନ୍ନ ସ୍ତରର ସ୍ତ୍ରୀ ଓ ପୁରୁଷ ଲୋକ ଅଛନ୍ତି, ସମସ୍ତଙ୍କର ଧର୍ମ ମାନବ ଧର୍ମ । ମାଳ ଅଠା ଓ ମହାନ୍ତ ବାଳାଙ୍କ କଥା ଆଗରୁ କୁହାଯାଇଛି ।

**ଅନ୍ନପୂର୍ଣ୍ଣା ସାମନ୍ତରାୟ**—ଗୋପବନ୍ଧୁ ଚୌଧୁରୀଙ୍କ ଆଶ୍ରମରେ ବରିରେ ରହି ଲୋକସେବା ଅଭ୍ୟାସ କରିଥିଲେ । ୧୯୫୫ ମସିହାରେ ସେ କୋରାପୁଟକୁ ତୀର୍ଥଯାତ୍ରା କରିଥିଲେ ଓ ରହିଗଲେ ଚୁମୁଡ଼ିବାଇ ଗ୍ରାମରେ ଅଗସ୍ତି ରୂପରେ, ଆଜି ମଧ୍ୟ ସେ ସେହି ଗାଆଁରେ ଅଛନ୍ତି ୧୯୮୨ ମସିହାରେ । ରାୟଗଡ଼ାରୁ ଗୁଣୁପୁର ଗଲାବେଳେ ରାମନାଗୁଡ଼ା ପରେ ଚାଂଡ଼କଣା ଛକ, ସେଇଠୁ ୪ କିଲୋମିଟର ପାହାଡ଼ିଆ ରାସ୍ତା ପାର ହେଲେ ଏକ ପାହାଡ଼ କୋଳରେ ଏହି ଚୁମୁଡ଼ିବାଇ ଗାଆଁ । ବିଶ୍ୱନାଥଙ୍କୁ ଖବର ଆସିଲା ପାଖଆଖ ଗାଆଁରେ ଓ ଏହି ଚୁମୁଡ଼ିବାଇରେ ଅନେକ କୁଷ୍ଠ ରୋଗୀ ଅଛନ୍ତି । ସ୍ଥିର ହେଲା କସ୍ତୁରବା ନିଧି ପକ୍ଷରୁ ଗୋଟିଏ କୁଷ୍ଠ ଚିକିତ୍ସା କେନ୍ଦ୍ର ଏହି ଗାଆଁରେ ଖୋଲାଯିବ । ଅନ୍ନପୂର୍ଣ୍ଣା ଏହି କେନ୍ଦ୍ରର ଦାୟିତ୍ୱରେ ରହିଲେ । ଏହା ତାଙ୍କର ଜୀବିକା ନୁହେଁ, ଜୀବନ । ଗ୍ରାମବାସୀଙ୍କ ସୁଖ ଦୁଃଖରେ ଭାଗୀ ହୋଇ ରହିବାପାଇଁ ସେ କୁଣ୍ଠିତ ନୁହନ୍ତି । ଯେଉଁ ଗ୍ରାମକୁ ଏବେ ସୁଦ୍ଧା ସଭ୍ୟତାର ଆଲୋକ

ଛୁଇଁ ନାହିଁ, ସେହିପରି ଏକ ଗାଆଁରେ ତାଙ୍କର ଆଶ୍ରମ । ଗ୍ରାମବାସୀ ମାନଙ୍କର ବିଭିନ୍ନ ପ୍ରକାରର ପ୍ରଶ୍ନ ପରାମର୍ଶ, କିନ୍ତୁ ତାଙ୍କର ଉତ୍ତର ଆଇନକୁ ଛୁଇଁ ନ ହେଁ, ସଭ୍ୟତାକୁ ଛୁଇଁ ନ ହେଁ, ମାନବିକତାକୁ ଛୁଏଁ ।

**ଗୋପୀନାଥ ମହାନ୍ତି**—କୋରାପୁଟକୁ ୧୯୫୨ ମସିହାରେ ସରକାରୀ ଅଫିସର ଭାବେ ଆସିଲେ । ବିଶ୍ୱନାଥଙ୍କଠାରୁ ବୟସରେ ୨ବର୍ଷ ବଡ଼ । ଭୂସମସ୍ୟାର ସମାଧାନ ପାଇଁ ସେ ସରକାରୀ କଳକୁ ସାଧାରଣ କର୍ମୀଙ୍କ ଜରିଆରେ ଲୋକଙ୍କ ନିକଟକୁ ନେବାକୁ ଚେଷ୍ଟା କରୁ ଥାଆନ୍ତି । ସେଥିପାଇଁ ସେ ଆଦିବାସୀ ଲୋକମାନଙ୍କ ସହ ଏକାକାର ହେବାକୁ ଛୁନ୍ଦୁଥିଲେ । ମୂଳତଃ ଆଦିବାସୀ ମାନଙ୍କ ପ୍ରତି ତାଙ୍କର ପ୍ରେମ ଓ କରୁଣା ଥିଲା । ଜଣେ ପ୍ରତିଷ୍ଠିତ ଲେଖକ ଭାବେ ସେ ଆଦିବାସୀ ସଂସ୍କୃତିର ମହନୀୟ ଦିଗକୁ ଲୋକଲୋଚନକୁ ଆଣିଲେ । କୋରାପୁଟରେ ଗୋଟିଏ ଦଶନ୍ଧି ମାତ୍ର ରହିଥିଲେ ସୁଦ୍ଧା ଆଦିବାସୀ ମାନଙ୍କର ସେ ଆପଣାର ହୋଇପାରିଥିଲେ । ଆଦିବାସୀ ମାନଙ୍କ ଅର୍ଥନୀତି ଓ ସଂସ୍କୃତି ସମ୍ପର୍କରେ ଆଲୋଚନା କଲାବେଳେ ତାଙ୍କ ମୁହଁର ଜ୍ୟୋତି ବଦଳିଯାଏ । ଏକ ଦିବ୍ୟ ଭାବରେ ସେ ଉଦ୍‌ବୁଦ୍ଧ ହୋଇ ପଡ଼ନ୍ତି । ରାୟଗଡ଼ାର ରେଭିନ୍ୟୁ ଡ଼ିଭିଜନାଲ୍ ଅଫିସର ଭାବେ ସେ ସବୁଦା ଆଦିବାସୀଙ୍କ ନ୍ୟାୟପୂର୍ଣ୍ଣ ଦାବୀକୁ ସମର୍ଥନ କରିଥିଲେ । ଶାସନ ଓ ବିଶ୍ୱର ବିଜ୍ଞାନ ଯେତେବେଳେ ମିଶି କରିଥାଏ, ତାଙ୍କର କ୍ଷମତା ମଧ୍ୟ ସେପରି ଅଧିକ । ବିଶ୍ୱନାଥ ଗୋପୀ ବାବୁଙ୍କୁ ବାରମ୍ବାର ଭେଟୁଥିଲେ । ନିଜର ଚିତ୍ତାକର୍ଷକ ଢ଼ଙ୍ଗରେ ସେ ଗୋପୀବାବୁଙ୍କୁ ଆଦିବାସୀଙ୍କ ସମସ୍ୟା ସହ ପରିଚିତ କରାଉଥିଲେ । ନିଜର ଅନୁଭୂତି ଜଣାଇ ଲୋକମତ ଶାସନରେ ପ୍ରତିଫଳିତ ହେଉ ବୋଲି ସେ ଗୋପୀବାବୁଙ୍କ ଠାରୁ ଆଶା କରୁଥିଲେ । ଗୋପୀନାଥ

ଯଥାର୍ଥରେ ଆଦିବାସୀ ମାନଙ୍କ ସେବା କରୁଥିଲେ, ଯଦ୍ୟପି ଶାସନ କରିବାକୁ ଆସିଥିଲେ ।

**ଗୋବିନ୍ଦ ରେଡ୍ଡି** — କର୍ଣ୍ଣାଟକର ଲୋକ, ବିବାହ କରିଥିଲେ । ପୂର୍ବେ ଆନନ୍ଦଙ୍କ ଆଶ୍ରମରେ ଥିଲେ । ବିନୋବାଙ୍କ ସହ ସମ୍ପର୍କ ଥିଲା, ତାଙ୍କର ଆହ୍ୱାନରେ କୋରାପୁଟ ଆସିଲେ ଓ ଗରଣ୍ଡାରେ ରହିଲେ । ଗରଣ୍ଡା ଗୁଣୁପୁରର ସବ୍‌ଡିଭିଜନ୍‌ର ଆନ୍ଧ୍ର ଓଡ଼ିଶା ସୀମାନ୍ତ ଅଞ୍ଚଳର ଏକ ଅନୁନ୍ନତ ଗ୍ରାମ । ସେଠାରେ ସେ କୃଷିର ଉନ୍ନତି ସମ୍ପର୍କରେ ପରୀକ୍ଷା ନିରୀକ୍ଷା କଲେ । ୧୯୫୫ରୁ ୧୯୬୮ ମସିହା ଯାଏ ସେ ଆନ୍ନାସାହେବ, ନବଜୀବନ ମଣ୍ଡଳ, ସର୍ବସେବା ସଂଘ ଓ ଅନ୍ୟାନ୍ୟ ବହୁ ସଂସ୍ଥାର ସାହାଯ୍ୟ ନେଇ ଗରଣ୍ଡା ଓ ପାଖ ଆଖ ଗାଆଁରେ ଚକବନ୍ଦୀ, ଭୂମି ସଜାଡ଼ିବା, ଜଳସେଚନ ଇତ୍ୟାଦି କାମ କଲେ । ସେ ଅଞ୍ଚଳରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପ ବଢିବାରୁ ନିଜ ଅସଫଳ ହୋଇଛନ୍ତି ବୋଲି ବୋଧହୁଏ ଧାରଣାକରି ଗରଣ୍ଡାରୁ ଚାଲିଗଲେ । ୧୯୬୮ରେ ସେବାଗ୍ରାମ ଯାଇ ପାଞ୍ଚବର୍ଷ ରହିଲେ ଓ କୌଣସି କାରଣରୁ ସେଠାରେ ଥିବା ସଂସ୍ଥା ଉପରେ ବୀତସ୍ପୃହ ହୋଇ ସେଠାରୁ ଚାଲିଗଲେ ଓ ପରିବ୍ରାଜକ ଭାବେ ଜୀବନ କଟାଇଲେ । ଉତ୍ତର ପ୍ରଦେଶରେ ଥିବାବେଳେ ସେ ସାଧୁ ସଚ୍ଚିଦାନନ୍ଦ ଆଖୁ ଚାଷୀ ମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଚିନିକଳ ମାଲିକ ମାନଙ୍କ ବିରୁଦ୍ଧରେ ନିଜ ପ୍ରକାଶିତ ଖବର କାଗଜରେ ତୀବ୍ରଭାବେ ଲେଖିବାରୁ ମାଲିକ ମାନଙ୍କ ଶରବ୍ୟ ହେଲେ । ସେମାନଙ୍କ ଦଲାଲ ଗୋଷ୍ଠୀ ସଚ୍ଚିଦାନନ୍ଦଙ୍କୁ ନିଜ ଆଶ୍ରମରେ ହତ୍ୟାକଲେ । ତାଙ୍କସହ ଗୋବିନ୍ଦ ରେଡ୍ଡି ରହୁଥିବାରୁ ଆତତାୟୀଙ୍କ ଗୁଳିରେ ଉଭୟ ୧୯୭୪ ମସିହା ଅପ୍ରେଲ ୭ତାରିଖରେ ପ୍ରାଣ ହରାଇଲେ ।

**ଜଗନ୍ନାଥ ମିଶ୍ର** — ଘର ପାରଳାଖେମୁଣ୍ଡି, ତତ୍କାଳୀନ ମାନ୍ଦ୍ରାଜ ପ୍ରଦେଶର କମ୍ୟୁନିଷ୍ଟ ଓ ଓଡ଼ିଶାର ସର୍ବୋଦୟ ନେତା

ମାନଙ୍କ ସହ କାର୍ଯ୍ୟ କରୁଥିଲେ । ପାରଳାଖେମୁଣ୍ଡି ଅଞ୍ଚଳ ଗୁଣୁପୁରକୁ ଲାଗି ରହିଛି । ସେତେବେଳେ ସମୟରେ ବି.ଏ. ପାଶ୍ କରିଥିଲେ । ୧୯୫୩ ମସିହାରୁ ବିଶ୍ୱନାଥଙ୍କ ସହ ପରିଚିତ ହେଲେ, କୁଜେନ୍ଦ୍ରୀର ପାଖ ଗାଆଁ ସେରମାରେ ମିଶ୍ରଙ୍କ ଶ୍ୱଶୁର ଘର, ତେଣୁ ମଝିରେ ମଝିରେ ସେରମା ଓ କୁଜେନ୍ଦ୍ରୀ ଆସନ୍ତି । ମାନ୍ଦ୍ରାଜର କମ୍ୟୁନିଷ୍ଟ ନେତାମାନଙ୍କ ପ୍ରଭାବରେ ସାମ୍ୟବାଦ ପ୍ରଚାରକଲେ ଗୁଣୁପୁର ଓ ପାରଳାଖେମୁଣ୍ଡି ଅଞ୍ଚଳରେ । ଏହି ସାମ୍ୟବାଦରେ ମାନବିକତା, ଅହିଂସା ଓ ସାମାଜିକ ନ୍ୟାୟ ଓତଃପ୍ରୋତଃ ଭାବେ ମିଶି ରହିଥିଲା । ସେ ଗଞ୍ଜାମ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେଇ-ଥିଲେ । ଜଗନ୍ନାଥ ମିଶ୍ର ଆଦିବାସୀଙ୍କ ପ୍ରତି ନ୍ୟାୟ, ସର୍ବୋଦୟର ମାନବିକତା ଓ ସାମ୍ୟବାଦର ଦୃଢ଼ କାର୍ଯ୍ୟାନୁଷ୍ଠାନ ପନ୍ଥାରେ ବିଶ୍ୱାସ କରୁଥିଲେ ଓ ସେହିପରି କାର୍ଯ୍ୟ କରୁଥିଲେ । ୧୯୫୭ ମସିହା ନିର୍ବାଚନରେ ସେ କମ୍ୟୁନିଷ୍ଟ ଟିକେଟରେ ଓଡ଼ିଶା ବିଧାନସଭାକୁ ପାରଳାଖେମୁଣ୍ଡିରୁ ନିର୍ବାଚିତ ହୋଇଥିଲେ । ସେ ଖଦଡ଼ ପିନ୍ଧୁ-ଥିଲେ ଓ ଅନୁନ୍ନତ ଲୋକଙ୍କ ସହ ମିଶି ଯାଉଥିଲେ । କିଛିଦିନପରେ ନ୍ୟାୟ ପାଇଁ କଠୋର କାର୍ଯ୍ୟାନୁଷ୍ଠାନ ଆବଶ୍ୟକ ବୋଲି ବିଚାର କରି ସେ ବାମପନ୍ଥୀ କମ୍ୟୁନିଷ୍ଟ ଦଳରେ ରହିଲେ । ପରେ ନକ୍ସଲ୍ ବାଡ଼ି ଆନ୍ଦୋଳନ ସହ ସମ୍ପୃକ୍ତ ବୋଲି ଅଭିଯୁକ୍ତ ହୋଇ ସେ ବନ୍ଦୀ ହେଲେ ଓ ନଜର ବନ୍ଦୀରେ ରହିଲେ ।         ମସିହାରେ ତାଙ୍କର ଦେହାନ୍ତ ହୋଇଗଲା । କେହି କେହି ତାଙ୍କୁ ବିଭ୍ରାନ୍ତ ରାଜନୈତିକ କର୍ମୀ କହନ୍ତି, ଅନ୍ୟ କେହି କେହି ତାଙ୍କୁ ତଳେ ପଡ଼ି ଯାଇଥିବା ଲୋକଙ୍କ ପାଇଁ ନ୍ୟାୟ ଦେବାକୁ ଆଗ୍ରହୀ କର୍ମୀରୂପେ ଅଭିହିତ କରନ୍ତି ।

**ନାଗଭୂଷଣ ପଟ୍ଟନାୟକ**—(ଏହାଙ୍କର ବିସ୍ତୃତ ଜୀବନୀ ପୁସ୍ତକର ପରିଶିଷ୍ଟରେ ଦିଆଯାଇଅଛି । ବିଶ୍ୱନାଥଙ୍କ

କାର୍ଯ୍ୟ ପ୍ରଣାଳୀ ଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ଜୀବନର ମଧ୍ୟାହ୍ନରେ ଏ ଅହିଂସା ମତ ଉପରେ ଆସ୍ଥା ରଖି ପାରିନଥିଲେ । ତଥାପି ବିଶ୍ୱନାଥଙ୍କ ପରି ଜଙ୍ଗଲି ଲୋକଙ୍କ ପାଇଁ ଜୀବନର ସମସ୍ତ ଶକ୍ତି ବ୍ୟୟ କରିଛନ୍ତି ।

ମାଳତୀ ବିଶ୍ୱାଳ, ଅନ୍ନପୂର୍ଣ୍ଣା ସାମନ୍ତରାୟ, ଗୋବିନ୍ଦରେଡ୍ଡି, ଗୋପୀନାଥ ମହାନ୍ତି, ମହାନନ୍ଦ ବାଗ, ଜଗନ୍ନାଥ ମିଶ୍ର ଓ ନାଟଭୂଷଣ ପଟ୍ଟନାୟକ । କେବଳ ଯେ କୋରାପୁଟ ଓ ଆଖପାଖ ଅଞ୍ଚଳର ଆଦିବାସୀମାନଙ୍କ ପାଇଁ କାର୍ଯ୍ୟ କରୁଥିଲେ ଅନ୍ୟମାନେ କାମ କରୁ ନଥିଲେ ଏହାମଧ୍ୟ ନୁହେଁ । ଆକାଶର ଶହ ଶହ ନକ୍ଷତ୍ର ପୁଞ୍ଜ ପରି ସପ୍ତର୍ଷି ମଣ୍ଡଳ । କିନ୍ତୁ ସାଧାରଣ ଲୋକ ଆକାଶ ସମ୍ପର୍କରେ ଜାଣିବାକୁ ଆରମ୍ଭକଲେ ସପ୍ତର୍ଷି ମଣ୍ଡଳ ଦେଖେ । ସେହିପରି କୋରାପୁଟ ଗଞ୍ଜାମ ଜିଲ୍ଲାର କନ୍ଧମାନଙ୍କ ଭିତରେ କାମ କରୁଥିବା ଲୋକଙ୍କ କଥା ଜାଣିବାକୁ ଚାହିଁଲେ ଏ ଆଠଜଣ ଭୁଲି ହେବେ ନାହିଁ । ପଦାକୁ ଦେଖିଲେ ଏମାନେ କେହି କାହା ସହ ସମ୍ପୃକ୍ତ ନୁହେଁ, କାର୍ଯ୍ୟ ପ୍ରଣାଳୀର କୌଣସି ସାମଞ୍ଜସ୍ୟ ନାହିଁ । କିନ୍ତୁ ଏମାନଙ୍କ ଜୀବନର ସାରକଥା, ଯାହାର କେହି ନାହିଁ, ତାଙ୍କର କଥା ଚିନ୍ତାକରିବା, ସେଥିପାଇଁ କାମ କରିବା । ଭୁବନମୋହନ ପଟ୍ଟନାୟକ, ପ୍ରହଲ୍ଲାଦ ପାଣିଗ୍ରାହୀଙ୍କ ଠାରୁ ଆରମ୍ଭ କରି ରାଧାମୋହନ ସାହୁ ଓ ରାଧାକୃଷ୍ଣ ବିଶ୍ୱାସରାୟଙ୍କ ପର୍ଯ୍ୟନ୍ତ ବହୁ କର୍ମୀ ଓ ନେତା ଏ ଅଞ୍ଚଳରେ ସର୍ବଦିନ କାମ କରିଛନ୍ତି । ତ୍ୟାଗ, ସେବା, ନିଷ୍ଠା ସବୁ ଗୁଣରେ ସେମାନେ ମହୀୟାନ୍ । ଉପରୋକ୍ତ ଆଠଜଣ ଅଧିକନ୍ତୁ ଆଦିବାସୀମାନଙ୍କ ପାଇଁ ଭାବୋଲ୍ଲାସିତ ହୋଇ ଉଠନ୍ତି । ତଥାପି ଆଦିବାସୀ ନ୍ୟାୟ ପାଇନାହିଁ । ଛଅଜଣ ଅନ୍ଧ ହାତୀ ଦେଖିବାକୁ ଯାଇଛନ୍ତି । ଅନ୍ଧଙ୍କ ତାଙ୍କ ନିଷ୍ଠା ଓ ଆଗ୍ରହକୁ ସୀମାବଦ୍ଧ ସତ୍ୟ ଆଡକୁ ନେଇଛି ।

❋

# ଗାନ୍ଧିବାଦର କଷଟି ପରୀକ୍ଷା

୧୯୮୧ ମସିହାରୁ ରାୟଗଡ଼ା ସବ୍‌ଡିଭିଜନ୍‌ରେ ଶୋଷଣ ବିରୁଦ୍ଧରେ ଯେଉଁ ଅହିଂସା ସଂଗ୍ରାମ ଚାଲିଥିଲା ତାହା ଧିମେଇ ଗଲା ୧୯୫୫ରେ। ବିନୋବା ଗ୍ରାମଦାନ ଓ ଗ୍ରାମ ସଂଗଠନକୁ ଗୁରୁତ୍ୱ ଦେଲେ। ବିଶ୍ୱନାଥ ସେହି କାର୍ଯ୍ୟରେ ଅଧିକ ସମୟ ଦେଲେ। ମାତିଳିର ରାଇଘର, ପଟାଙ୍ଗୀ ନନ୍ଦପୁର, ଦାଢ଼ୁଆ, ନାରାୟଣ ପାଟଣା ବନ୍ଧୁଗା ପାହାଡ଼ି ଇତ୍ୟାଦି ସମସ୍ତ ଅଞ୍ଚଳରେ ବିଶ୍ୱନାଥ ବୁଲିବାକୁ ଲାଗିଲେ। ତେଣୁ କେବଳ ରାୟଗଡ଼ା ଗୁଣୁପୁର ଅଞ୍ଚଳ ଉପରେ ସେ ନିଜେ ଜୋର ଦେଇ ପାରିଲେ ନାହିଁ। ତାଙ୍କର ମୁଖ୍ୟ ଅଣଆଦିବାସୀ ସହକର୍ମୀ ମହମ୍ମଦ ବାଙ୍କା ଗୁଣୁପୁର ଅଞ୍ଚଳରେ ପରିଚିତ ନଥିଲେ। ଅନେକ ସର୍ବୋଦୟ କର୍ମୀ ୧୯୬୦ ମସିହା ଯାଏ କୋରାପୁଟର ନିଷ୍ଠାର ସହ କାର୍ଯ୍ୟ କରୁଥିଲେ। କିନ୍ତୁ ଆଦିବାସୀର ମୁଖ୍ୟ ସମସ୍ୟା ସହ ବୋଧ୍ୟ ଏହି କର୍ମୀମାନେ ଜଡ଼ିତ ହୋଇ ପାରିଲେ ନାହିଁ। ସର୍ବସେବା ସଙ୍ଘ ଖଦି କାମର ପ୍ରସାର କରିଥିଲେ। ନନ୍ଦପୁର ଅଞ୍ଚଳରେ ଏବେ ସୁଦ୍ଧା ତା'ର ଚିହ୍ନ ଅଛି। 'ନବଜୀବନ ମଣ୍ଡଳ' ଆଦିବାସୀମାନଙ୍କ ଯୌତୁକପ୍ରଥା ବିରୁଦ୍ଧରେ କାମ କରୁଥିଲା। ସେ ଅଞ୍ଚଳରେ ଆଦିବାସୀ ସମାଜରେ ବରକୁ ଯୌତୁକ ଦେବାକୁ ପଡ଼େ। ବାହାହେବା ପୂର୍ବରୁ ସେ ଝିଅର ବାପକୁ 'ଝୋଲା' ବା ଯୌତୁକ ଆକାରରେ ଟିଣ ଟିଣ ମଦ, ଗୋରୁ, ମଇଁଷି, ଗୁଣ୍ଡିକ ଇତ୍ୟାଦି ଦିଏ। ଏଥିପାଇଁ ତାକୁ ଋଣ କରିବାକୁ ପଡ଼େ ଓ ଅନ୍ୟର ଦାସତ୍ୱ ବରଣ କରିବାକୁ ହୁଏ। ସେ କାର୍ଯ୍ୟ ଖରାପ ବୋଲି କସ୍ତୁରବା ଓ ନବଜୀବନ କର୍ମୀମାନେ ଲୋକଙ୍କୁ ବୁଝାନ୍ତି। ୧୯୫୮ରେ ବିଶ୍ୱନାଥ ନବ-

ଜୀବନ ମଣ୍ଡଳର ସଭାପତି ହେଲେ ନିର ଭାରପ୍ରାପ୍ତ ଚାଳଣା ଶୈଳି, ଆଲମଣ୍ଡାଠାରୁ ୩ ମାଇଲ ଦୂରେ ବ୍ରହ୍ମପୁରରେ ଗ୍ରାମସେବା କେନ୍ଦ୍ର ହେଲା । ସେଠାରେ ସ୍କୁଲ ନିର୍ମାଣ, ପିଲାମାନଙ୍କୁ ମଣ୍ଡଳ ତରଫରୁ ପ୍ରାଥମିକ ଶିକ୍ଷା ଦିଆଗଲା । କେତେକଙ୍କୁ ଅନୁଗୁଳ ପଠାଗଲା, ଶର୍ମା ବୋଲି ଗୋଟିଏ ଜଣ ପିଲା ଶିକ୍ଷକତା କରୁଛନ୍ତି ଏବେ । ସେ ସେହି ସମୟର ଛାତ୍ର । ଦେବାଙ୍କ ଲଣ୍ଡରୁ ପିଲାଙ୍କୁ ନେଇ ବ୍ୟାସଜୀଙ୍କୁ ଉତ୍କଳ ଆଶ୍ରମକୁ ପଠାଗଲା, ମରବଡ଼ି ସମୟରେ । ୧୯୫୫ ବିନୋବାଙ୍କ ପଦଯାତ୍ରା ପରେ ବିଶ୍ୱନାଥ କୁଜେନ୍ଦ୍ରୀ ଆଶ୍ରମ ପ୍ରାୟ ଛାଡ଼ି ଦେଇଥିଲେ । କୁଜେନ୍ଦ୍ରୀ ଠିକଣାରେ ତାଙ୍କ ଭେଟ ହୋଇଥିଲା । ସେ ଗୋଟିଏ ସ୍ଥାନରେ ଦିନେ ଦୁଇ ଦିନରୁ ଅଧିକ ରହୁ ନଥିଲେ । ଗାଁ ଗହଳରେ ତ ଖାଇବାକୁ ମିଳୁଥିଲା । ଲୋକମାନେ ପ୍ରେମରେ ଖାଇବାକୁ ଦେଉଥିଲେ । ଗାଁ ଲୋକଙ୍କ ସମସ୍ୟା ସବୁ ନିଜକୁ ଜଡ଼ିତ କରି ଅନ୍ତରଙ୍ଗ ନ୍ୟାୟପୂର୍ଣ୍ଣ ସମାଧାନ ବତାଉଥିଲେ ସେମାନେ ମୁଠେ ଖାଇବାକୁ ଦେବେ ନାହିଁ କାହିଁକି ? ସହର ଅଞ୍ଚଳରେ ବିଶ୍ୱନାଥ ଛତୁ ହେଉ ଛତକା ହେଉ ଯାହା ମିଳେ ଖାଇ ଦିଅନ୍ତି, ସାତ୍ତ୍ୱିକ ଖାଦ୍ୟ ନମିଳିଲେ ଉପବାସ ରହିଯାନ୍ତି । ପୂର୍ବରୁ ୧୯୫୧ ମସିହାରୁ ସେ ମାଛ ଭୋଜନ ତ୍ୟାଗ କରିଥିଲେ । ଗାନ୍ଧିଜୟନ୍ତୀରେ ପୂର୍ଣ୍ଣ ଉପବାସ କରୁଥିଲେ । ଗୋପବାବୁଙ୍କ ଦେହାନ୍ତ ପରେ ତାଙ୍କ ତିରୋଧାନ ଦିବସଟିକୁ ଉପବାସ ମାଧ୍ୟମରେ ପାଳନ କରନ୍ତି । ସେ ପ୍ରାୟ କ୍ରୋଧ ପ୍ରକାଶ କରନ୍ତି ନାହିଁ । ସେ କହନ୍ତି, "ଯାହାକୁ ସଂଶୋଧନ କରିବାକୁ ଥାଏ, ତା ଉପରେ କ୍ରୋଧ ପ୍ରକାଶ କରାଯାଏ, କେତେକ ଲୋକ ପ୍ରେମ ହେତୁ ଲୋକ ଉପରେ ରାଗନ୍ତି, କେତେକ ଲୋକ ଅନ୍ୟମାନଙ୍କୁ ନିମ୍ନ ଶ୍ରେଣୀର ବିଚାରି ରାଗନ୍ତି । କିନ୍ତୁ ମୋର ଅନେକ ବେଳେ ଧାରଣା ହୁଏ ଆମ ତଳେ କେହି ନାହାନ୍ତି । ତେଣୁ କାହା ଉପରେ ରାଗିବ ? କ୍ରୋଧକୁ ନିୟନ୍ତ୍ରଣ କରିବାକୁ

ହେଲେ ପ୍ରତ୍ୟେକୁ ନିର୍ଭୀକ ଭାବେ କହିବାକୁ ହୁଏ ।" ସେ ପରିଶେଷ ଭାବେ କର୍ମୀମାନଙ୍କ କାର୍ଯ୍ୟ ତଦାରଖ କରନ୍ତି । ଆନୁମାନିକ ଭାବେ ଗମନାଗମନ ସେ ବିଭିନ୍ନ ସଂଗଠନ କେନ୍ଦ୍ର ବୁଲିବା ସମୟରେ କର୍ମୀ ମାନଙ୍କୁ ଭଲକାମ କରିବାକୁ ଉତ୍ସାହିତ କରନ୍ତି । ପାଦରେ ବୁଲି ବୁଲି ଯାଆନ୍ତି, ଯେଉଁଆଡେ ବସ୍‌ର ସୁବିଧା ଥାଏ, ବସ ମାଲିକଙ୍କ ଜରିଆରେ ଗୋଟିଏ ମାଗଣା ପାସର ବ୍ୟବସ୍ଥା କରିଥାଆନ୍ତି ଯିବା ଆସିବା ପାଇଁ । ବୁଲି ବୁଲି ଗଲବେଳେ ଜଙ୍ଗଲ ଭିତରେ ହାତୀ, ବାଘ, କଲରାପତରିଆ ବାଘ, ଭାଲୁ, ବାର୍‌ହା, ହରିଣ ଇତ୍ୟାଦିଙ୍କ ସହ ଦେଖାହୁଏ । କେଉଁ କେଉଁ ଜଙ୍ଗଲରେ ପରିତ୍ୟକ୍ତ ଗୁମ୍ଫାର ସନ୍ଧାନ ମିଳେ, ପରିତ୍ୟକ୍ତ ମନ୍ଦିର ମଧ୍ୟ । ପଦ୍ମପୁର ନିକଟସ୍ଥ ଜଗା-ମଣ୍ଡାପାହାଡ ତଳର ଶିବମନ୍ଦିର ଓ ପାହାଡଉପର ତନ୍ତ୍ରପୀଠ,ଫୁଲ-ବାଣୀ ବେଲଘରର ଗୁମ୍ଫା ଇତ୍ୟାଦି ରମଣୀୟ ସ୍ଥାନ ଦେଖି ବିଶ୍ୱନାଥ କାମରୁ ସାମାନ୍ୟ ଅବସର ବିନୋଦନ କରନ୍ତି, ନିଜ ଗାଆଁ ଛାଡ଼ିବା ପରେ ୧୯୫୫ରେ ତାଙ୍କର ଉପର ଭାଇ ଭେଟ ହେଲେ କୁଜେନ୍ଦ୍ରୀ ଆଶ୍ରମ ସ୍କୁଲ୍‌କୁ ଶିକ୍ଷକ ହୋଇ ଆସିବା ପରେ । ବିଶ୍ୱନାଥ ତାଙ୍କ ଘରକୁ ଯାଆନ୍ତି ନାହିଁ, କାହିଁକି ପୁଣି ଅଠା ଲଗିବ ? କିନ୍ତୁ ବଡ଼ ଭାଇ ପର୍ବପର୍ବାଣୀରେ ପିଠାପଣା ପଠାଇଦିଅନ୍ତି । ଗୋପବାବୁଙ୍କ ଦେହାନ୍ତ ପରେ ରମାଦେବୀ, ଆଚାର୍ଯ୍ୟ ମହାଶୟ ଓ ମାଲତୀ ଦେବୀ ଇତ୍ୟାଦିଙ୍କ ସହ ବିଶ୍ୱନାଥ ସମ୍ପର୍କ ରଖିଲେ । ଆଦିବାସୀ, ଅହିଂସା ଗଠନ ମୂଳକ କାର୍ଯ୍ୟ, ବୟସ୍କ ଲୋକଙ୍କ ପ୍ରତି ଆଶ୍ୱାସନା, ଶିଶୁ ଓ ବାଳକ ବାଳିକା ମାନଙ୍କ ପ୍ରତି କର୍ତ୍ତବ୍ୟ, ଗ୍ରାମମାନଙ୍କର ଦୁଃସ୍ଥ ଆଦି-ବାସୀ ଲୋକଙ୍କ ଅର୍ଥନୈତିକ ଅବସ୍ଥାର ଉନ୍ନତିରେ,ବିଶ୍ୱନାଥ ସମର୍ପି ହେଲେ । ସେ ୧୯୫୯ରେ ମାଲକାନଗିରିର ବଣ୍ଡା ପାହାଡ଼ ତଳେ 'ତଲବଣ୍ଡା' ରେ ଏକ ନବଜୀବନ ମଣ୍ଡଳ କେନ୍ଦ୍ର ଖୋଲିଥିଲେ । କଦମଗୁଡା ଗାଆଁରେ, ସେତେବେଳକୁ ଗୋବିନ୍ଦପାଲି ଆଶ୍ରମ ସ୍କୁଲ

ହୋଇ ପାରିଥିଲା, କିନ୍ତୁ ବଣ୍ଡା ପିଲାଏ ପ୍ରାୟ ସ୍କୁଲକୁ ଆସୁନଥିଲେ । ସେହି କେନ୍ଦ୍ରରେ ରାଧାମଣି ସାହୁ କର୍ମୀ ଭାବେ ରହିଲେ । ବୁଝାଇ ବୋଲି ସେ ଗାଆଁର ବଣ୍ଡାଝିଅ ଅନୁଗୁଳରେ ପାଠ ପଢ଼ିଲା, ଆଜି କେତେକ ବଣ୍ଡାପିଲା ଅନୁଗୁଳ ବାଳକରାଜଉଚ୍ଚଛାତ୍ରାବାସରେ ପଢ଼ିଲେ । ସେଠାରେ ଚଡ଼୍ ଚଡ଼୍ ଲାଗି ଗୋଟିଏ ପିଲା ମରିଗଲା, ତେଣୁ ବଣ୍ଡାପିଲା ଆଉ ଅନୁଗୁଳ ଆସିବାକୁ ରାଜି ହେଲେ ନାହିଁ । ଉପରବଣ୍ଡା ମୁଦୁଲି ପଡ଼ାରେ ସରକାରଙ୍କ ରେସିଡେନ୍‌ସିଆଲ୍ ସେବାଶ୍ରମ ଟିଏ ପ୍ରତି-ଷ୍ଠିତ ହେଲା । କଦମଗୁଡ଼ା ଗାଆଁରେ ଏବେ ୧୦।୧୫ଜଣ ଶିକ୍ଷିତ ଲୋକ ବାହାରିଲେଣି । ତନ୍ମଧ୍ୟରୁ ଅଧିକାଂଶ ଏହି ନବଜୀବନ ମଣ୍ଡଳ ଆଶ୍ରମ ଶିକ୍ଷିତ ହୋଇଥିଲେ । ଅନ୍ନାସାହେବ କାର୍ଯ୍ୟ କରୁଥିବା ସମୟରେ ଜିଲ୍ଲା ସଂଗ୍ରାମ ଓ ଭୂଦାନ କାର୍ଯ୍ୟର ସଙ୍ଗେ ଜଡ଼ିତ ଭାବେ ବିଶ୍ୱନାଥ ରହିବାକୁ ଇଚ୍ଛା କଲେ ନାହିଁ । ଶ୍ରୀ ରତନ ଦାସ ସଂଯୋ-ଜକ ଭାବେ ମନୋନୀତ ହେଲେ । କିନ୍ତୁ ଶେଷରେ ଇଶ୍ୱରଲାଲ ବ୍ୟାସ ଏହି କାର୍ଯ୍ୟ କଲେ । ସରକାରୀ ଆଦିବାସୀ ଗ୍ରାମ ମଙ୍ଗଳ ବିଭାଗ, ଗୋଷ୍ଠୀ ଉନ୍ନୟନ ବିଭାଗ ଓ ଅନ୍ନା ସାହେବଙ୍କ ନେତୃତ୍ୱରେ ପରି-ଚାଳିତ ସର୍ବସେବା ସଙ୍ଘର କର୍ମୀମାନେ ଟଙ୍କା ଜରିଆରେ ଆଦିବାସୀ ମାନଙ୍କର ଉନ୍ନତ ହେବା କଥା ଚିନ୍ତାକଲେ । ବିଶ୍ୱନାଥ ଏହି ମତରେ ବିଶ୍ୱାସୀ ନଥିଲେ । ଲୋକମାନେ ସାଧାରଣତଃ ଆର୍ଥିକ ସାହାଯ୍ୟ ମିଳୁଥିବା ଅନୁଷ୍ଠାନକୁ ଧାଇଁଲେ । ତେଣୁ ବିଶ୍ୱନାଥ ଅଧିକ ପ୍ରଭାବଶାଳୀ କର୍ମୀ ତିଆରି କରିପାରିଲେ ନାହିଁ । କେବଳ ଲୋକଙ୍କ ଭୋଟ ଦେଲେ ହେବନାହିଁ, ବିଶ୍ୱନାଥ ଆର୍ଥିକ ଉନ୍ନତି ଅପେକ୍ଷା ନୈତିକ ଉନ୍ନତିକୁ ଏପରି ଜୋରଦେଲେ ଯେ ତାହା ସମୃଦ୍ଧିର ପରିମାପକ ଭାବେ ଗଣାଗଲା ନାହିଁ । କିନ୍ତୁ ସରକାରୀ ସଂସ୍ଥା ଓ ଅନ୍ନାଙ୍କ ସଂସ୍ଥା ଲୋକମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇ ପାରିଲା ନାହିଁ । ଅପର ପକ୍ଷରେ ମାଳତୀ ବିଶ୍ୱାଳ, ଅନ୍ନପୂର୍ଣ୍ଣା

ସାନ୍ତାଳଗସ୍ତ, ଗୋବିନ୍ଦ ରେଡ୍ଡି ଇତ୍ୟାଦିଙ୍କ ସଙ୍ଗଠନ ରେଜନ୍ ଗୁପ୍ତଙ୍କ ଘରୋଇସ୍ତ ପରମ୍ପରାର ଆଶ୍ରମ ପରି ସ୍ଥାନସ୍ତ ମାଟିରେ ଚେର ବିସ୍ତାର-ଦେଇ । ଆଜ୍ଞା ହଠାତ୍ ଗଣ୍ଡିଙ୍କ ବାଲି କୋରାପୁଟରୁ ଛାଡ଼ିଗଲେ ନାହିଁ । ତାଙ୍କ ସମୟରେ ଅଖିଳ ଭାରତ ଆଦିମ ଜାତି ସେବକ ସଂଘର ସଭା କୋରାପୁଟ ସହରରେ ହୋଇଥିଲା । ଢେବର ଭାଇ ପନ୍ତ ଆସିଥିଲେ, ଜୟପ୍ରକାଶ ମଧ୍ୟ ୨।୩ଥର ଉନ୍ନୟନ କାର୍ଯ୍ୟ ଦେଖିବାକୁ ଆସିଥିଲେ । ୧୯୫୨ରୁ ମହତାବ ମନ୍ତ୍ରୀମଣ୍ଡଳୀରେ ଉତ୍ସାହଜନକ ଶାସନଗତ ସହଯୋଗ ମିଳି ନଥିଲା । ଆଜ୍ଞା ନିଜେ କାମ କମାଇଲେ । ୧୯୫୯ ମସିହାକୁ ଅନେକ ଜନ କୋରାପୁଟ ବାହାରେ ରହିଲେ । ୧୯୬୦ ପରେ ଆଉ ଆସିଲେ ନାହିଁ, ଓଡ଼ିଶା ଅଞ୍ଚଳରେ କାମ କଲେ । ଧର୍ମପ୍ରିୟ, ରାମଦାସ ଓ ଅନ୍ୟ କେତେକ କର୍ମୀ ଓଡ଼ିଶା ବାହାରୁ ଆସିଥିଲେ, ସେମାନେ କିଛିଦିନ ପରେ ଗଲେ । ଏହି କର୍ମୀମାନେ ଆଦିବାସୀର ମୁଖ୍ୟ ସମସ୍ୟା ସହିତ ବୋଧେ ଜଡ଼ିତ ହୋଇ ପାରିଲେ ନାହିଁ । ଉଦାହରଣ ସ୍ୱରୂପ ଅନେକ ଭୂଦାନ କର୍ମୀ ୧୯୫୫ରେ ଆଜ୍ଞାଙ୍କ ନିକଟରେ ସ୍ୱେଚ୍ଛାସେବକ ଭାବେ ରହିଥିଲେ, କ୍ରମେ ସେମାନେ ସେବାକାର୍ଯ୍ୟ ଛାଡ଼ି-ଦେଲେ । ସେମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତି ନିଜକୁ ଉଚ୍ଚମଧ୍ୟବିତ୍ତ ଶ୍ରେଣୀର ସାମିଲ କରିଛନ୍ତି । ସମ୍ପତ୍ତି ଠୁଳ କରିଛନ୍ତି । ତା'ଫଳରେ ଭୂଦାନ କର୍ମୀମାନଙ୍କ ନିଷ୍ଠାପ୍ରତି ଆଦିବାସୀ ମାନଙ୍କର ବିଶ୍ୱାସ ରହିଲା ନାହିଁ । ସେମାନେ ଭାବିଲେ ଆମ ସମସ୍ୟା ସମାଧାନ କରିବାକୁ ଭୂଦାନ କର୍ମୀମାନେ ସମର୍ଥ ନୁହନ୍ତି । ଆଦିବାସୀ ସହଜେ ତ ସ୍ୱଳ୍ପ-ଭାଷୀ । ଯାହାକୁ ସମର୍ଥନ କରେ ତାକୁ ମଧ୍ୟ ଖୁବ୍ କମ୍ କହେ । ଯାହାକୁ ବିରୋଧ କରେ ତାକୁ ସ୍ପଷ୍ଟ କିଛି କହେ ନାହିଁ । ଯାହା ସହ ମନ ନମିଳେ ତାକୁ ପ୍ରକାଶ କରେ ନାହିଁ, ଯାହାକୁ ନିଜର ଭାବେ ତା'ସହ କଥା ହୁଏ । ବିଶ୍ୱନାଥ, ମାଳଅଗା ତା'ର ସେପରି ନିଜ

ଲୋକ, ସେହିପରି ଆଜି ଦୁଇ ଗୃହ ଜଣ ତା’ ନିଜ ଲୋକ, ସେମାନଙ୍କ ଭିତରେ ଅନନ୍ତ ଭୁବନମୋହନ ପଟ୍ଟନାୟକ ଓକିଲ, ଗୋପୀନାଥ ମହାନ୍ତି ମାଜିଷ୍ଟ୍ରେଟ୍। କିଏ କେଉଁ ମତବାଦର, କାହାଠାରୁ କ କେତେ ଦୂରରେ ଅଛି, ସେ ସବୁ ବିଚାରର ନାହିଁ। ଆମପାଇଁ ନ୍ୟାୟ ଆସିବା ଉଚିତ ବୋଲି କିଏ କହୁଛି, କେମିତି ଆମେ ତାହା ପାଇବୁ ସେ ହେଉଛି ତାଙ୍କର ଚିନ୍ତା। ଭୁବନମୋହନ ପଟ୍ଟନାୟକଙ୍କ ଘର ଆନ୍ଧ୍ର ପ୍ରଦେଶରେ, ଓଡ଼ିଆ, ତେଲୁଗୁ ଉଭୟ ଭାଷାରେ ଭଲ ବୁଝାଇ ପାରନ୍ତି। ଜଣେ ଚିନ୍ତାଶୀଳ ବ୍ୟକ୍ତି। ପ୍ରଥମେ ନବରଙ୍ଗପୁରରେ ରହୁଥିଲେ। ଆଦିବାସୀମାନଙ୍କ ଭୂମି ସମ୍ପର୍କୀୟ କେସ୍ ଲଢ଼ିବା ପାଇଁ ଯେତେବେଳେ ଓକିଲ ନିଯୁକ୍ତ କରାଗଲା ୧୯୫୩ ମସିହାରେ ଭୁବନ ମୋହନ ତନ୍ମଧ୍ୟରେ ସ୍ଥାନ ପାଇଲେ। ସେ ଆଦିବାସୀମାନଙ୍କ ବିରୁଦ୍ଧରେ ହେଉଥିବା ଚକ୍ରାନ୍ତ ସମ୍ପର୍କରେ ସିଧା ଧଳଖ ବହୁକଥା ଶୁଣିଲେ। ଜଣେ ଲୋକ ସାଧାରଣ ଭାବେ ମାନବିକତାବାଦୀ ହେଲେ ନିଶ୍ଚେ ଏହି ଅତ୍ୟାଚାର ଓ ଶୋଷଣର ବିରୋଧ କରିବ। ଭୁବନ ମୋହନଙ୍କର ଏହି ମାନବିକତା ତାଙ୍କୁ ଭାବର ଆବେଗରେ ଉଦ୍‌ବୁଦ୍ଧ କରିଥିଲା। ସେ ଚିରନ୍ତନ ସତ୍ୟଠାରୁ ସାମାନ୍ୟ ଦୂରେଇ ଗଲେ। ସତ୍ୟ ଓ ଅହିଂସାର ଯେଉଁ ଶିକ୍ଷା ପାଇଥିଲା ସେଥିରୁ ସେ ବିଶ୍ୱାସ ହରାଇଲେ। ଯୁଦ୍ଧୋତ୍ତର ପୃଥିବୀରେ ରୁଷିଆର ପ୍ରଭାବ, ଚୀନ ଦେଶର ସାମ୍ୟବାଦ ମତ ଗ୍ରହଣ ଓ ତେଲେଙ୍ଗାନା ଆନ୍ଦୋଳନ ପରେ ଭୁବନ ମୋହନ ସହଜରେ ଆନ୍ତର୍ଜାତିକ ସାମ୍ୟବାଦ ଆଡ଼କୁ ମୁହାଁଇଲେ। ସେ ସାମ୍ୟବାଦରେ ସତ୍ୟ ଓ ଅହିଂସାର ସ୍ଥାନ ଗୌଣ, ଅତ୍ୟାଚାରୀକୁ ଶାସ୍ତି ଦେବା, ପ୍ରତିଶୋଧ ନେଇ ନ୍ୟାୟ ହାସଲ କରିବାରେ ତାଙ୍କ ପାଇଁ କୌଣସି ପ୍ରତିବନ୍ଧକ ନଥିଲା। ଭାରତର ଦୁଇଜଣ ଜନନାୟକ ବୁଦ୍ଧ ଓ ଗାନ୍ଧି ଯେଉଁ ଅହିଂସାର ପରୀକ୍ଷା କରି ସଫଳ ହୋଇଥିଲେ, ମହାବୀର ଜୈନ ଯେଉଁ ଅହିଂସା ଧର୍ମରେ ଅନେକ ବ୍ୟକ୍ତିଙ୍କୁ ଦୀକ୍ଷିତ

କଥାଇଥିଲେ, ସେ ଅହିଂସାର ପରୀକ୍ଷା କରିବା ପାଇଁ ଭୁବନ ମୋହନ ପ୍ରସ୍ତୁତ ନଥିଲେ । ଯିଏ ଆମକୁ ଯୁଗ ଯୁଗ ଧରି ଅପମାନିତ କରିଛି, ଆମର ଧନ, ଯୌବନ, ନାରୀ ଓ ଅନ୍ୟାନ୍ୟ ପଣ୍ୟ ଦ୍ରବ୍ୟ ଲୁଟି ନେଇଛି ତାକୁ ଆମେ ଅହିଂସା ଶିଖାଇବା ? ଯେଉଁ ଆଇନର ତର୍ଜମା କରି ଆଦିବାସୀର ସ୍ୱାର୍ଥରକ୍ଷା ହୋଇପାରୁନାହିଁ, ସେ ଆଇନକୁ କାହିଁକି ମାନିବା ? ବୋଧହୁଏ ଏହିସବୁ ପ୍ରଶ୍ନଥିଲା ଭୁବନ ମୋହନଙ୍କର । ତାଙ୍କ ପାଖକୁ ଯେଉଁ ଆଦିବାସୀ ଆସୁଥିଲେ ସେମାନଙ୍କୁ ସେ ଏହି ପ୍ରଶ୍ନକଲେ । ବିଶ୍ୱନାଥଙ୍କର ଆପାତ ବିଫଳତା ପରେ ପରେ ଏ ପ୍ରଶ୍ନ ଆଦିବାସୀଙ୍କୁ ବିଚଳିତ କଲା । ଭୁବନମୋହନ ନବରଙ୍ଗପୁରରୁ ଗୁଣୁପୁର ଆସି ସେଠାରେ ସ୍ଥାୟୀଭାବେ ଭଡାଘରେ ରହି ଓକିଲାତି କଲେ । ଗୁପ୍ତଗଡ଼ା ଓ ଗୁଣୁପୁର ଅଞ୍ଚଳର ବହୁ ଆଦିବାସୀଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ । ଯେଉଁମାନେ ବିଶ୍ୱନାଥଙ୍କ ସଂସର୍ଗରେ ଆସିଥିଲେ ସେହିମାନେ ଭୁବନମୋହନଙ୍କୁ ଭେଟିଲେ । ଦୁଇଜଣ ଗୋଟିଏ ଲକ୍ଷ୍ୟରେ ସ୍ୱାଧୀନତା, ଶୋଷଣରେ ବିଲୋପ, କିନ୍ତୁ ପନ୍ଥା ଦୁଇଜଣଙ୍କର ଭିନ୍ନ ଭିନ୍ନ । ଆଦିବାସୀର ସୀମିତ ଦୃଷ୍ଟିଭଙ୍ଗୀରେ ପନ୍ଥା ବଡ ନୁହେଁ, ଲକ୍ଷ୍ୟ ବଡ । ତେଣୁ ଭୁବନମୋହନଙ୍କ କଥା ବହୁ ଆଦିବାସୀ ଯୁବକଙ୍କ ମନକୁ ଛୁଇଁଲା । ପୂର୍ଣ୍ଣ ଗମାଙ୍ଗ ଓ ଅନ୍ୟମାନେ ଏହି ଗୋଷ୍ଠୀର । ପୂର୍ଣ୍ଣଙ୍କ ଘର ପଦ୍ମପୁର ପାଖ ଖମାପଦରରେ ବୟସ ଏବକୁ ପାଖାପାଖି ୫୦, ପ୍ରାଥମିକ ଶିକ୍ଷା ପାଇ ୧୯୫୨ ରେ ଭୂଦାନ ଯଜ୍ଞ ଶିବିରରେ କର୍ମୀଭାବେ ଯୋଗ ଦେଇଥିଲେ, ଗପ୍ପା ସର୍ବୋଦୟ ସମ୍ମିଳନୀରେ ସ୍ଥିର ହୋଇଥିଲା, ଯେଉଁମାନେ ଜନସେବା ପାଇଁ ସାରା ଜୀବନ କାମ କରିବେ ସେମାନେ ନିଜକୁ ଜୀବନ ଦାନୀ ବୋଲି ଘୋଷଣା କରିପାରିବେ । ପୂର୍ଣ୍ଣ ନିଜକୁ ଜୀବନଦାନୀ ଭାବେ ଘୋଷଣା କଲେ । କିନ୍ତୁ ୧୯୫୫ ପରେ କମ୍ୟୁନିଷ୍ଟ ମତବାଦ ସଂସ୍ପର୍ଶରେ ଆସିଲେ । ଭୁବନମୋହନ ତାଙ୍କର ଦୀକ୍ଷାଗୁରୁ

ହେଲେ । ବିନୋବାଙ୍କ ନିର୍ମାଣ କାର୍ଯ୍ୟକ୍ରମରେ ଉପେକ୍ଷା ସଫଳ ନହେବା ଦ୍ୱାରା ଭୁବନମୋହନଙ୍କ ଉପଦେଶ ଆପାତତଃ ସତ୍ୟ ବୋଲି ଜଣା ପଡ଼ୁଥାଏ, ପୂର୍ଣ୍ଣ ଓ ତାଙ୍କର ସାଥୀମାନେ ମାଳତୀ ବିଶ୍ୱାଳ ଇତ୍ୟାଦିଙ୍କୁ ଯଥେଷ୍ଟ ସମ୍ମାନ ଦେଖାନ୍ତି, ସେମାନଙ୍କର ଅନେକ ଉପାୟକୁ କମ୍ୟୁନିଷ୍ଟ ହେବାପରେ ମଧ୍ୟ ଉପଯୋଗ କରନ୍ତି, ବିଶ୍ୱନାଥ ଓ ତାଙ୍କର ସହ କର୍ମୀମାନେ ଯେଉଁ ସ୍ତରରେ ଯେଉଁ ଲୋକଙ୍କଠାରୁ ସମର୍ଥନ ପାଇ ଥିଲେ, ପୂର୍ଣ୍ଣ ଓ ଅନ୍ୟମାନେ ସେହି ଲୋକଙ୍କଠାରୁ ସମର୍ଥନ ପାଇଲେ । କିନ୍ତୁ ଏମାନେ ଗାନ୍ଧିବାଦଠାରୁ ଦୂରେଇ ଗଲେ, ଅହିଂସା ହିଁ ଏକ ମାତ୍ର ରାସ୍ତା ବୋଲି ବିଶ୍ୱାସ କଲେନାହିଁ ।

ଅହିଂସା ରାସ୍ତାରେ ନେବାପାଇଁ ଆଉଜଣେ ଯୁବକ ଚେଷ୍ଟା କରୁଥିଲେ । ସେ ହେଲେ ନଗିନ୍ ପରିଖ, ଘର ଗୁଜୁରାଟ, ଉଚ୍ଚ ଶିକ୍ଷିତ, ସମ୍ଭ୍ରାନ୍ତ ଓ ଧନୀଘରର, ବୈପାରୀଗୁଡ଼ାକୁ କେନ୍ଦ୍ରକରି କାମ କଲେ । ସେ ନିଜ ବ୍ୟବସାୟରୁ ପଇସା ଆଣି କୋରପୁଟ ଆଦିବାସୀଙ୍କ ପାଇଁ ନିର୍ମାଣ କାମ କରୁଥିଲେ । ନିଜେ ଭଲ କର୍ମୀ ବାଛିବାକୁ ଚେଷ୍ଟା କରୁଥିଲେ । ସେ ସମବାୟରେ ବିଶ୍ୱାସ କରୁଥିଲେ ଓ ସର୍ବୋଦୟ ପ୍ରତି ତାଙ୍କର ଶ୍ରଦ୍ଧାଥିଲା । ସେ ସର୍ବ ସେବା ସଂଘ ବା ଅନ୍ୟକୌଣସି ସଂସ୍ଥାରୁ ପଇସା ନେଇ ନଥିଲେ, ବୈପାରୀଗୁଡ଼ାରେ ଯେଉଁ ବେସରକାରୀ ବ୍ଲକ ହେଲା, ସେହି ବ୍ଲକ କର୍ମକର୍ତ୍ତାଙ୍କ ସହ ନଗିନଙ୍କର ସମ୍ପର୍କ ରହିଲା । କେତେକ ସର୍ବୋଦୟ କର୍ମୀ ଏହି ବ୍ଲକ ପରିଚାଳନା ଦାୟିତ୍ୱରେ ରହିଲେ, ସର୍ବ ସେବା ସଂଘ ଓଡ଼ିଶା ସରକାରଙ୍କଠାରୁ ୭ଲକ୍ଷ ୮୧ ହଜାର ଟଙ୍କାର ଅନୁଦାନ ନେଇ ଏହି ବ୍ଲକ ପରିଚାଳନା କରୁଥିଲେ । ୧୯୫୯ ମସିହା ବେଳକୁ ଏ ଚେଷ୍ଟା ଚାଲୁଥିଲା । ନଗିନ ଥିବା ସମୟରେ ଜୟପ୍ରକାଶ ନବରଙ୍ଗପୁର, ବୈପାରୀଗୁଡ଼ା, ଜୟପୁର ଓ ରାୟଗଡ଼ା ଇତ୍ୟାଦି ଅଞ୍ଚଳ ବୁଲି-

ଲୋକମାନଙ୍କୁ ଆତ୍ମ ନିର୍ଭରଶୀଳ ହେବାକୁ ବୁଝାଉଥିଲେ । ନବୀନ୍ ପରିଖଙ୍କର ୧୯୭୧ ମସିହା ନଭେମ୍ବର ମାସରେ ଏକ ମର୍ମନ୍ତୁଦ ପରିସ୍ଥିତିରେ ଅକାଳବିୟୋଗ ହୋଇଥିଲା । ପରେ ପରେ ବୈପାରି-ଗୁଡ଼ାର ବେସରକାରୀ ବ୍ଲକ୍ ସଂସ୍ଥା ସମ୍ପୂର୍ଣ୍ଣ ବିଫଳ ହୋଇଛନ୍ତି ବୋଲି ଜଣା ପଡ଼ିଲା । ସରକାରଙ୍କଠାରୁ ବେସରକାରୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଅଧିକ ଅପାରଗ ବୋଲି ପ୍ରମାଣ କରିବାକୁ ସରକାରଙ୍କ ପାଖେ ଏକ ଅମୋଘଅସ୍ତ୍ର ରହିଗଲା ।

ଆଦିବାସୀମାନଙ୍କ ଶିକ୍ଷା ଲାଭକୁ ବିଶ୍ୱନାଥ ଗୁରୁତ୍ୱ ଦିଅନ୍ତି । ତାଙ୍କ ମତରେ ଆଦିବାସୀ ମାନେ ଅଳ୍ପ ପାଠପଢ଼ି ଚାକିରୀ କରିବାକୁ ଆଗ୍ରହୀ, କାରଣ ବହୁବାଧା ସଭ୍ୟତାରେ ସେମାନଙ୍କର ଅଧିକ ଆବଶ୍ୟକତା ବୋଧ ନାହିଁ । ମୁଁ ବହୁଦିନରୁ ଛାତ୍ରଛାତ୍ରୀ ମାନଙ୍କୁ ନେଇ ଆଦିବାସୀ ଆଶ୍ରମ ସ୍କୁଲରେ ଭର୍ତ୍ତି କରାଏ । ଆଶ୍ରମ ସ୍କୁଲକୁ ଯଥେଷ୍ଟ ପିଲା ଯାଆନ୍ତି ନାହିଁ । ସେମାନଙ୍କର ସ୍କୁଲ ଯିବା ଅଭ୍ୟାସ ନଥିଲା । ଏବେ ମଧ୍ୟ ଗରିବ ଆଦିବାସୀ ଲୋକର ପିଲା ପାଠ ପଢ଼ିବାକୁ ଯାଉଛନ୍ତି କି ? ଭଦ୍ରକ ବାଳାଶ୍ରମ, ଦିଲ୍ଲୀ ହରିଜନ ଉଦ୍ୟୋଗଶାଳା, ଅନୁଗୁଳ, ରମ୍ଭା, ବ୍ରହ୍ମପୁରର ବେସରକାରୀ ଅନୁଷ୍ଠାନକୁ ଛାତ୍ରଛାତ୍ରୀ ପଠାଏଁ । ପିତୃମାତୃହୀନ ଆଦିବାସୀ ପିଲାଏ ସାଧାରଣତଃ ମାଟ୍ରିକ୍ ପର୍ଯ୍ୟନ୍ତ ପଢ଼ି ଚାକିରି କରନ୍ତି । କୁଜେନ୍ଦ୍ରୀ ଗାଆଁର ମାଧବ ଏବେ ଭୁବନେଶ୍ୱର ଆକାଉଣ୍ଟାଣ୍ଟ୍ ଜେନେରାଲ ଅଫିସ୍‌ରେ ଚାକିରି କରୁଛନ୍ତି । ରେଳବାଇରେ କେତେକ ଚାକିରି କରିଛନ୍ତି । ସାନ୍ତ୍ରୁ ଶବର ପୋଷ୍ଟାଲ୍ ଡିପାର୍ଟମେଣ୍ଟ୍‌ରେ ଅଫିସର ହୋଇଛନ୍ତି । ସୁଦାମ ଗମାଙ୍ଗ ବି.ଏ.ବି.ଇଡ଼୍ ପାଶ୍ କରି ଶିକ୍ଷକତା କରୁଛନ୍ତି । ଆଉ ୨।୩ଜଣ ବି.ଏ ପାଶ୍ କରି ଶିକ୍ଷକତା କରୁଛନ୍ତି । ମାଟ୍ରିକ୍ ପାଶ୍ କରି କେତେଜଣ ଶିକ୍ଷକତା କଲେଣି । ସେମାନେ ସର୍ବୋଦୟ କର୍ମୀମାନଙ୍କ ସଂସ୍ପର୍ଶରେ

ଆସି ଶିକ୍ଷା ପ୍ରତି ଆଗ୍ରହୀ ହୋଇଛନ୍ତି । ଆଦିବାସୀ ମାନଙ୍କ ସାମୁହିକ ଉନ୍ନତି ଦୃଷ୍ଟିରୁ ବିଚାର କଲେ ଏହା ଅଧିକ ମାନ ହୋଇ ନପାରେ କିନ୍ତୁ ମୋପାଇଁ ତ ଗୋଟିଏ ପାଦ ଆଗକୁ ଯିବା ଯଥେଷ୍ଟ ବୋଲି ମୁଁ ବିଚାରୁଥିଲି । ଶିକ୍ଷା ଦିଗରେ ଅଧିକ କିଛି କରିପାରିଲି ନାହିଁ ।

କେବଳ ଶିକ୍ଷା ଦିଗରେ ନୁହେଁ ଆଦିବାସୀମାନଙ୍କୁ ମହା-ଘରଷାସୁ ଯୋଗ୍ୟ ପଥ ସମ୍ପାଳନରେ ନେତା ପାଇଁ ଆମେ ଯଥେଷ୍ଟ କିଛି କରିପାରିଲୁ ନାହିଁ । କର୍ମୀମାନେ ନିଜେ ଭଲରେ ଚଳିବା ସଙ୍ଗେ ସଙ୍ଗେ ସମାଜସେବା କରିବା ଉଚିତ ବୋଲି ଆମ୍ଭାଙ୍କ ପାଖୁ ଶିକ୍ଷି ଥିଲେ । ଆମ୍ଭା ଗଲା ପରେ ଅଧିକାଂଶ ସମାଜ ସେବାକୁ ମୁଖ୍ୟ କାର୍ଯ୍ୟ ବୋଲି ବିଚାରିଲେ ନାହିଁ । ଆଦିବାସୀ ମାନଙ୍କ ନେତୃତ୍ୱ ନେବାକୁ ଚେଷ୍ଟାକଲେ । ତେଣୁ ସେମାନେ ଆଦିବାସୀଙ୍କୁ ଯଥେଷ୍ଟ ସମ୍ମାନ ଦେଇ ଉଚ୍ଚ ସ୍ତରକୁ ଆଣିଲେ ନାହିଁ । ନେତୃତ୍ୱ ନିଜଂ ହାତରେ ସୀମିତ ରଖିବାକୁ ଚେଷ୍ଟାକଲେ । ସରକାର ବ୍ଲକ୍ ଜରିଆରେ ଲୋକ ମାନଙ୍କ ମଧ୍ୟରେ ଉନ୍ନୟନ କାର୍ଯ୍ୟ ଆରମ୍ଭ କରିବାରୁ ଭୂଦାନକର୍ମୀଙ୍କ ଗୁରୁତ୍ୱ ଲୋକ ଚକ୍ଷୁରେ ନ୍ୟୁନ ହୋଇଗଲା । ଭୂଦାନ କର୍ମୀମାନେ ଅତ୍ୟାଚାରର ବିରୋଧ ନକରି ସମୟ ସମୟରେ ସରକାରୀ କଳ ଉପରେ ନିର୍ଭରକଲେ ।"

୧୯୬୦ ମସିହା ପରେ ଆଚାର୍ଯ୍ୟ ମହାଶୟ ଥରେ ମାତ୍ର କୋରାପୁଟରେ ଗସ୍ତ କରିଥିଲେ । ଗୁଣୁପୁର ରାୟଗଡ଼ା ଓ ପାରଳା ଖେମୁଣ୍ଡି ଅଞ୍ଚଳରେ ଯେଉଁ କମ୍ୟୁନିଷ୍ଟ କର୍ମୀମାନେ ରହିଲେ ସେମାନେ କେତେକ ପୁରୁଣା ଭୂଦାନ କର୍ମୀ ଓ ଚେତନାମୂଳକ କର୍ମୀଙ୍କୁ ନିଜ ମତରେ ଦୀକ୍ଷିତ କରାଇ ପାରିଲେ । ସେମାନେ ବୁଝାଇ ପାରିଲେ ଯେ ଭୂଦାନ କର୍ମୀଙ୍କର ଯେଉଁ ଲକ୍ଷ୍ୟ ତାଙ୍କର ମଧ୍ୟ ସେହି ଲକ୍ଷ୍ୟ, ଶୋଷଣ ବିହୀନ ସମାଜ । କେତେକ ଆଦିବାସୀ ଲୋକ ପ୍ରଥମେ ଭୂଦାନକର୍ମୀଙ୍କ ଜରିଆରେ ସର୍ବସାଧାରଣ ସମସ୍ୟା ବୁଝିବା ଓ

ଶୋଷଣ ବିରୁଦ୍ଧରେ ଅହିଂସ ଆନ୍ଦୋଳନ କରିବାକୁ ଚେଷ୍ଟା କରି ଥିଲେ । ସେମାନଙ୍କ ମଧ୍ୟରୁ କେତେକ ଭୂଦାନ କର୍ମୀଙ୍କ ସଙ୍ଗ ତ୍ୟାଗକରି କମ୍ୟୁନିଷ୍ଟ ମତବାଦରେ ଦୀକ୍ଷିତ ହୋଇଥିଲେ । ଭୂଦାନ ବାଲା ହିଂସାର ଅପକାରିତା ସମ୍ପର୍କରେ ବୁଝାଇବାରେ ସଫଳ ହେଲେ ନାହିଁ ! ଉନବିଂଶ ଶତାବ୍ଦୀର ଷଷ୍ଠ ଦଶକ କୋରାପୁଟ ଭୂଇଁରେ ଗାନ୍ଧିବାଦ ଓ କମ୍ୟୁନିଷ୍ଟ ମତବାଦର ସଂଘର୍ଷ ଦେଖିଲା । ଗାନ୍ଧିବାଦ ମୁଣ୍ଡ ନୁଆଁଇ ଦେଲା । କମ୍ୟୁନିଷ୍ଟମାନେ ପୂର୍ବାହ୍ନର ସୂର୍ଯ୍ୟପରି କ୍ରମେ ବଳବାନ ହେଲେ ।

*

# ବାଲିଖମାରର ହରିମିଶ୍ର

କୋରାପୁଟ ଜିଲ୍ଲାରେ ଶୋଷଣ ବିରୁଦ୍ଧରେ ସଂଗ୍ରାମ ହୋଇ ଯେତେ ଯେଉଁଠି ହିଂସାକାଣ୍ଡ ହେଲା ତାହା କମ୍ୟୁନିଷ୍ଟମାନେ କରି ନଥିଲେ । ଅନେକ ସ୍ଥାନରେ ସ୍ୱତଃସ୍ଫୂର୍ତ୍ତ ଭାବେ ଲୋକେ ହିଂସାର ଆଶ୍ରୟ ନେଇଥିଲେ । ସେଥିମଧ୍ୟରୁ ଗୋଟିଏ ଉଦାହରଣ ଦିଆଯାଇ ପାରେ ।

ତେରୁବାଲିରେ ଯେଉଁଠି ଆଜି ଇଣ୍ଡିଆନ ମେଟାଲ୍ସର କାରଖାନା ହୋଇଛି ତାର ପାଖରେ ଐତିହାସିକ ଗାଆଁ ପାଇକ-ପଡ଼ା ଓ ପାଇକପଡ଼ାର ଅନତି ଦୂରରେ ବାଲିଖମାର ବୋଲି ଛୋଟିଆ ପଡ଼ାଟିଏ ଥିଲା । ସେହି ଗାଆଁର ଅଧିକାଂଶ କୃଷିଜମି ହରିମିଶ୍ରଙ୍କର ଥିଲା । ହରିମିଶ୍ର କାଶୀପୁର ରାଜାଙ୍କର ସମ୍ପତ୍ତି ରକ୍ଷଣାବେକ୍ଷଣ କରୁଥିଲେ । ରାଜା ମରିଗଲା ପରେ ରାଣୀଙ୍କ ପକ୍ଷରୁ ତାଙ୍କର ଜମିବାଡ଼ି ଖବର ବୁଝିଲେ । ସେ ପ୍ରାୟତଃ ରାୟଗଡ଼ା ସହରରେ ରହୁଥିଲେ । ତାଙ୍କର ପିତୃପିତାମହ ଅନ୍ୟଆଡ଼ୁ ଆସି ପାଇକପଡ଼ାରେ

ରହୁଥିଲେ । ହରିମିଶ୍ରେ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀରେ ନିଜକୁ ସାମିଲ କରିବାକୁ ଯତ୍ନ କରିଥିଲେ । ରାୟଗଡ଼ା ବସ୍‌ଷ୍ଟାଣ୍ଡ ନିକଟରେ ତାଙ୍କର ଲମ୍ବା ପକ୍କା ଘର, ସେ ସବୁ ଘର ଦୋକାନ ପାଇଁ ଭଡ଼ା ଦିଆ ହୋଇଥିଲା । ଆଦିବାସୀମାନେ କହନ୍ତି ବାଲି ଖମାରର ଚାଷ ଜମି ସବୁ ଆଦିବାସୀଙ୍କର ନିଜସ୍ୱ ଥିଲା । ମିଶ୍ରେ ଚଞ୍ଚକ କରି ଶାଗମାଛ ମୂଲ୍ୟରେ ସେ ସବୁ ଜମି ନେଇ ଯାଇଥିଲେ ଆଗରୁ ଥରେ । ଦୁଇଥର ଆଦିବାସୀମାନେ ହରିମିଶ୍ରଙ୍କୁ ଜମିଛାଡ଼ ଦେବାକୁ କହିଥିଲେ । ଏହା ୧୯୫୫ ମସିହା ପୂର୍ବର କଥା ।

ଏହି ମଧ୍ୟରେ ଭୂଦାନକର୍ମୀମାନେ ପାଇକଡୋ ଅଞ୍ଚଳରେ କାମ ଆରମ୍ଭ କଲେ । ଗ୍ରାମ ଗ୍ରାମ ବୁଲି ଅହିଂସାର ବାଣୀ ପ୍ରଚାର କରିଥିଲେ ଓ ଲୋକଙ୍କୁ ନିଜର ସମସ୍ୟା ଆଲୋଚନା ମାଧ୍ୟମରେ ସମାଧାନ କରିବାକୁ ପରାମର୍ଶ ଦେଉଥିଲେ । ସେତେବେଳେ ଶଂଖଳପଦର ଗାଆଁରେ ନବଜୀବନ ମଣ୍ଡଳର ଏକ କେନ୍ଦ୍ର ଥିଲା । ଶଂଖଳପଦରରୁ ବାଲିଖମାର ଏକ କିଲୋମିଟରରୁ କମ୍ ରାସ୍ତା । ଜମି ଯେଉଁ ଲୋକ ଚାଷ କରୁଛି ଓ ଯାହାର ଜମି ଅନ୍ୟାୟ ମାର୍ଗରେ ଅପହୃତ ହୋଇ ଯାଇଛି, ସେ ଜମି ତା'ର ହେଉ ବୋଲି ଦାବୀ ତ ୧୯୫୦ ମସିହାରୁ ବିଶ୍ୱନାଥ ଓ ତାଙ୍କର ସହକର୍ମୀମାନେ ଉଠାଇଥିଲେ । ମଝିରେ ବିଶ୍ୱନାଥ, ଈଶ୍ୱରଲାଲ ବ୍ୟାସ ଓ ଅନ୍ୟାନ୍ୟ କେତେକ କର୍ମୀ ହରିମିଶ୍ରଙ୍କୁ ବୁଝାଇଲେ, ପରିବେଶ ବଦଳି ଗଲାଣି, ପରିବର୍ତ୍ତିତ ପରିସ୍ଥିତି ସହ ଚଳିବା ଭଲ । ଆଦିବାସୀମାନେ ତ ଆପଙ୍କ ନାମରେ ମକଦ୍ଦମା କରୁଛନ୍ତି । ଆପଣ ତାଙ୍କୁ କିଛି ଜମି ଛାଡ଼ ଦିଅନ୍ତୁ । ବାଲିଖମାର କୃଷକମାନେ ଜମି ବାବଦରେ କିଛି ପଇସା ଦେବାପାଇଁ ପ୍ରସ୍ତୁତଅଛନ୍ତି । ଆପଣଙ୍କ ତରଫରୁ ସହୃଦୟତା ପ୍ରଥମେ ପ୍ରକାଶ ପାଇବା ଉଚିତ ।

କିନ୍ତୁ ହରିମିଶ୍ର ବୋଧହୁଏ ବୁଝିଥିଲେ ଜମି ଏପରି ଗ୍ରହଣ-ହେବା ଦ୍ୱାରା କାହାର ସ୍ୱାର୍ଥ ସାଧିତ ହେବନାହିଁ । ତେଣୁ ଭୂଦାନକର୍ମୀଙ୍କ ପରାମର୍ଶକୁ ଗୁରୁତ୍ୱ ଦେଲେ ନାହିଁ । ପୁଣି କେଶ୍ ଚାଲିଲା ଓ ଆଦିବାସୀ ମାନେ ମଝିରେ ମଝିରେ ମିଶ୍ରଙ୍କ ଜମି ଜବରଦସ୍ତ ଚାଷ କରି ଯାଉ-ଥିଲେ । ଏପରି ବିବାଦମାନ ପରିସ୍ଥିତି ଆଠ ବର୍ଷ ଚାଲିଲା । ଭୂଦାନ କର୍ମୀମାନେ କୌଣସି ପକ୍ଷକୁ ନ୍ୟାୟର ବାଟ ବତାଇବାକୁ ବୋଧେ ସଫଳ ହେଲେ ନାହିଁ । ୧୯୬- ମସିହାରେ ହରିମିଶ୍ରେ ବାଲିଖମାର ଗାଆଁକୁ ଯାଇଥିଲେ । ଫେରିବାବେଳେ ଗାଆଁଠାରୁ ଅଳ୍ପ ଦୂରରେ ଏକ ଛୋଟ ପାହାଡ଼ ତଳେ ସେ ନିହତ ହେଲେ । ଅଭିଯୋଗ ହେଲା ଯେ ଆଦିବାସୀମାନେ ସେଠାରେ ଲୁଚି ରହି ତାଙ୍କୁ ମାରିଦେଲେ । ମିଶ୍ରଙ୍କ ଶବ ଆସି ତା'ପରଦିନ ସକାଳେ ରାୟଗଡ଼ାରେ ପହଞ୍ଚିଲା । ଏ ମର୍ମନ୍ତୁଦ ଖବର ପାଇ ବିଶ୍ୱନାଥ ସଙ୍ଗେ ସଙ୍ଗେ ରାୟଗଡ଼ାରୁ ଟ୍ରେନ୍‌ରେ ତେରୁବାଲି ଗଲେ । ବାଲିଖମାର ପାଖ ଶଙ୍ଖଳପଦର ଗାଆଁରେ ନବଜୀବନ ମଣ୍ଡଳ କର୍ମୀମାନେ ରହୁଛନ୍ତି, କାଳେ ପୋଲିସ୍ ସେ ଅଞ୍ଚଳରେ କିଛି ଦମନ ମୂଳକ କାର୍ଯ୍ୟ କରି ବସିବେ, କର୍ମୀମାନଙ୍କ ମନବଳ ଭାଙ୍ଗି ପଡ଼ିବ, ସେମାନଙ୍କ ଅହିଂସ କାର୍ଯ୍ୟ-କ୍ରମକୁ କାଳେ କେହି ବିଶ୍ୱାସ କରୁନଥିବେ, ଏସବୁ ଚିନ୍ତା ବିଶ୍ୱନାଥଙ୍କ ମନକୁ ଘାରୁଥିଲା । ତେରୁବାଲି ଷ୍ଟେସନରେ କେତେକ ପୋଲିସ ଜମି ଗଲେଣି । କିନ୍ତୁ ବିଶ୍ୱନାଥ ସାଧାରଣ ଲୋକଙ୍କ ପରି ଦିଶୁଥିବାରୁ ତାଙ୍କୁ ପୋଲିସ୍ ସନ୍ଦେହ କରି ନଥିଲା ବୋଧେ । ତେରୁବାଲିରୁ ବାଲିଖମାର ଯାଇ ସେ ଦେଖିଲେ ଗାଆଁଟା ଯାକର ଲୋକ ଘରପାଖ ବାଡ଼ିଗଳା ଚାଷକରି ଯାଉଛନ୍ତି । ତାଙ୍କୁ ଗାଆଁ ଲୋକେ କହିଲେ, "ଆଜ୍ଞା, ମିଶ୍ର ଆମ ଜମି ମଧ୍ୟ ଜବରଦସ୍ତ ଚାଷ କରି ଦେବାରୁ ଆମେ ତାଙ୍କୁ ହାଣିଦେଲୁ ବୋଲି ସମସ୍ତଙ୍କୁ କହିବୁ ।' ସେ ଗାଆଁ ଲୋକଙ୍କ ସହ କିଛି ସମୟ କଟାଇ ବୁଝାଇବାକୁ

ଚେଷ୍ଟାକଲେ, ମହିଷ ମାରିବା ଠିକ୍ ହେଲା ନାହିଁ, ତା'ପରେ ଶଙ୍ଖଳ ପଦର ଓ ଡମ୍ବୁରଗେଡ଼ା ଗଲେ। ସନ୍ତରେ ଶଙ୍ଖଳପଦରରେ ରହିଲେ। ବାବାଜୀ ସାଧୁ ବୋଲି ଜଣେ ଭୂଦାନକର୍ମୀ ସେ ଅଞ୍ଚଳରେ ଭୂଦାନର ବାର୍ତ୍ତା ପ୍ରଚାର କରୁଥିଲେ ବୋଲି ପୋଲିସ ତାଙ୍କୁ ଗିରଫ କଲେ, ଲୋକଙ୍କୁ ମାତେଇବା ସନ୍ଦେହରେ। ନବଜୀବନ ମଣ୍ଡଳର ଅପର୍ଣ୍ଣା ମହାପାତ୍ର ବୋଲିଜଣେ ନାରୀକର୍ମୀ ଓ ଅନ୍ୟଜଣେ ନାରୀକର୍ମୀ ଶଙ୍ଖଳପଦରରେ ରହୁଥିଲେ। ସେମାନଙ୍କୁ ଉପଦ୍ରୁତ ନହେବାକୁ ପରାମର୍ଶ ଦେଇ ବିଶ୍ୱନାଥ ରାୟଗଡ଼ା ଫେରିଲେ। ପୋଲିସ ଅନେକ ଲୋକଙ୍କୁ ଧରିନେଲେ। ବିଶ୍ୱନାଥ କହନ୍ତି "ମାରିବାଟା ନିଶ୍ଚିତଭାବେ ଠିକ୍ ନୁହେଁ, କିନ୍ତୁ ମିଶ୍ରଙ୍କୁ ଯେତିକି ବୁଝାଇଲୁ ସେତିକିରୁ ସେ କିଛି ଗ୍ରହଣ କରିବାକୁ ଚାହୁଁଥିଲା। ଲୋକମାନେ ବହୁଦିନରୁ ଉତ୍ତ୍ୟକ୍ତହୋଇ ରହିଥିଲେ। ହରିମିଶ୍ରେ ବା ତାଙ୍କର ପୂର୍ବପୁରୁଷ ନ୍ୟାଯ୍ୟ ମୂଲ୍ୟରେ ଜମି କିଣି ଥିବାର ସନ୍ଦେହ ହେଉଛି, ଲୋକଙ୍କ ଉତ୍ତେଜନାକୁ ଚରମ ସ୍ତରକୁ ନେବା କୌଣସି ବିଚାରବନ୍ତ ଲୋକର କାମ ନୁହେଁ।"

—+—

# ହିଂସାର ବାତାବରଣ

ହିଂସାବାଦୀମାନେ ଭୂଦାନ, ଗ୍ରାମଦାନ, ସର୍ବୋଦୟ, ନବଜୀବନ ମଣ୍ଡଳ ଓ କସ୍ତୁରବା ଧାତ୍ରୀକେନ୍ଦ୍ରର କର୍ମୀମାନଙ୍କୁ ନିଜର ନମନଶୀଳ ମତପାଇଁ ସର୍ବସାଧାରଣରେ ନାପସନ୍ଦ କରୁଥିଲେ ଓ କଳ୍ପିତ ଗଣ୍ଡିରେ ଯାଉଥିବା ପ୍ରତିବିପ୍ଳବୀ ବୋଲି କହିବାକୁ ମଧ୍ୟ ପଛାଉ ନଥିଲେ । ସର୍ବୋଦୟ କର୍ମୀମାନେ ଶୋଷଣର ଯନ୍ତ୍ରର ଚଳନରେ ସହାୟକ ହୁଅନ୍ତି ବୋଲି ସେମାନେ ସମୀକ୍ଷା କରି ଦେଖି ଦେଉଥିଲେ । ୧୯୬୦ ମସିହାପରେ ସର୍ବୋଦୟ କର୍ମୀମାନଙ୍କର ଦୃଷ୍ଟିକୋଣ ମଧ୍ୟ ବଦଳି ଆସିଲା । ଗୋପବନ୍ଧୁ ଚୌଧୁରୀଙ୍କ ଦେହାନ୍ତ ପରେ ରମାଦେବୀ ଓ ଆଚାର୍ଯ୍ୟ ମହାଶୟ କୋରାପୁଟ ଜିଲ୍ଲାକୁ ପୂର୍ବପରି ବ୍ୟାପକ ଭାବରେ ଯାଇ ନଥିଲେ । ମାଳତୀ ଚୌଧୁରୀ ସଂଗ୍ରାମ ଚାଲୁ ରଖିଥିଲେ ମଧ୍ୟ ତାଙ୍କର ବୟସ, ସାଧନର ଅଭାବ, ସୀମିତ କର୍ମୀବଳ ସାରା ଓଡ଼ିଶାରେ ଏକ ବହୁମୁଖୀ ଆନ୍ଦୋଳନ ସୃଷ୍ଟି କରି ପାରିଲା ନାହିଁ । ନବଜୀବନ ମଣ୍ଡଳ ଜରିଆରେ ସେ ଏହି ଶୋଷଣ ବିରୋଧୀ ସଂଗ୍ରାମ ଚାଲୁରଖିଥିଲେ । କୋରାପୁଟ ଜିଲ୍ଲାରେ ଏହାର କେତୋଟି ଶାଖାଥିଲା । ସର୍ବୋଦୟ ମତବାଦର କେତେଜଣ ନିର୍ଦ୍ଦିଷ୍ଟ କର୍ମୀ ଏ କାର୍ଯ୍ୟ କରୁଥିଲେ । ଅନ୍ୟମାନେ ଶୋଷକ ମାନଙ୍କୁ ବାସନ୍ଦ କରିବା ତ ଦୂରର କଥା, ଅନେକ ସମୟରେ ସେମାନଙ୍କ ସହ ସମ୍ପର୍କ ରଖିଥିଲେ । ସେମାନେ ବିଶ୍ୱନାଥଙ୍କୁ ମାନୁଥିଲେ ମଧ୍ୟ ନିଜ ନିଜ ମଧ୍ୟରେ ସମନ୍ୱୟ ରକ୍ଷା କରି ନଥିଲେ । ଆଉ କୋରାପୁଟରୁ ଚାଲିଗଲାପରେ ଆଚାର୍ଯ୍ୟ ମହାଶୟ ଥରେ ମାତ୍ର [illegible] ଦୋଯାଷ କରିଥିଲେ । ଅନ୍ୟ କୌଣସି ନେତା କୋରାପୁଟ ଜିଲ୍ଲାରେ ଅଧିକ ଦିନ କଟାଇ ନାହାନ୍ତି । ବିଶ୍ୱନାଥ

୧୯୫୩ରୁ କୁଲେନ୍ଦ୍ରୀରୁ ରହଣୀ କମାଇ କଲ୍ୟାଣାଶ୍ରମ ବିକ୍ଷିପ୍ତ ଭାବେ ବୁଲିଛନ୍ତି । ୧୯୫୫ରୁ ତାଙ୍କ ନାମରେ ଚିଠିପତ୍ର ରାୟଗଡ଼ା ଠିକଣାରେ ଗଲା । ସେତେବେଳେ ସେ ଠକ୍କର ବାପା ଆଶ୍ରମରେ ରହୁଥିଲେ । କିଛି ଦିନ ପରେ ସେହି ଆଶ୍ରମକୁ ଲାଗି ସର୍ବସେବା ସଂଘ ପକ୍ଷରୁ ଜାଗା ନିଆଯାଇ ଘର ତିଆରି ହେଲା । ତାହା ନବଜୀବନ ମଣ୍ଡଳର ଅଫିସ୍ ଭାବେ ବ୍ୟବହୃତ ହେଲା । ବିଶ୍ୱନାଥ ବିଭିନ୍ନ ଅଞ୍ଚଳରୁ ବୁଲି ବୁଲି ଆସି ରାୟଗଡ଼ାରେ ପହଞ୍ଚି ଦିନେ ଦୁଇଦିନ ରହି ପୁଣି ଗସ୍ତରେ ଯାଆନ୍ତି । ୧୯୫୯ ମସିହାରୁ ସେ କୋରାପୁଟକୁ ଠିକଣା ବଦଳାଇଲେ । କୋରାପୁଟ ବୋଇଗୁମା ପୁରୁଣା ରାସ୍ତାରେ ଥିବା ନବଜୀବନ ମଣ୍ଡଳର ପ୍ରକୃତି ନିବାସରେ ସେ ରହିଲେ । କୋରାପୁଟ ସବ୍‌ଡ଼ିଭିଜନରେ ଭୂଦାନ ଓ ଗ୍ରାମଦାନ କାର୍ଯ୍ୟରେ ଅଧିକ ସମୟ ଦେଲେ । ୧୯୬୧ରୁ ପୁଣି ତାଙ୍କ ଠିକଣା ବଦଳିଲା ରାୟଗଡ଼ାକୁ । କାର୍ଯ୍ୟତଃ ସେ ଜିଲ୍ଲାର ସବୁଆଡ଼େ ବୁଲନ୍ତି । ସେ ତ କୌଣସି ଗ୍ରାମରେ ଦିନେ ଦୁଇଦିନରୁ ଅଧିକ ରହନ୍ତି ନାହିଁ । କିନ୍ତୁ ଚିଠିପତ୍ର ଆଦାନ ପ୍ରଦାନର ସୁବିଧା ଦୃଷ୍ଟିରୁ ଗୋଟିଏ ଠିକଣା ଦିଅନ୍ତି । ରାୟଗଡ଼ା ଠିକଣାରେ ୫ବର୍ଷରୁ ଅଧିକ ସମୟ ଚିଠି ଆସିବାପରେ ବିଶ୍ୱନାଥ ଫୁଲବାଣୀ ଜିଲ୍ଲାରେ ଅଧିକ ସମୟ କଟାଇଲେ । ସେହିଦିନୁ ତାଙ୍କର ବାଲିଗୁଡ଼ା ଠିକଣା ହେଲା । ଏଥିରୁ ସ୍ପଷ୍ଟ ଜଣାଯାଉଛି କୋରାପୁଟ ଜିଲ୍ଲାରେ ବିଂଶ ଶତାବ୍ଦୀର ୬ଷ୍ଠ ଦଶନ୍ଧିରେ ଆଦିବାସୀଙ୍କ ଦାବୀ ନାମରେ ଯେଉଁ କେତେକ ଘଟଣା ହିଂସାକାଣ୍ଡ ଘଟିଗଲା ତାହା ଅହିଂସାରେ ବିଶ୍ୱାସ କରୁଥିବା ନେତାମାନଙ୍କର ଅଗୋଚରରେ ସମ୍ଭବ ହେଲା । ହରିମିଶ୍ରଙ୍କ ହତ୍ୟାକାଣ୍ଡରୁ ସରକାର, ସମାଜସେବୀ ଓ ବାମପନ୍ଥୀ ରାଜନୈତିକ କର୍ମୀମାନେ ଯଥେଷ୍ଟ ଶିକ୍ଷାଲାଭ କରିପାରିଥାଆନ୍ତେ । ଆଦିବାସୀମାନେ ହରିମିଶ୍ରଙ୍କୁ ହତ୍ୟା କରିବା ପରେ ମଧ୍ୟ ହିଂସାର ସପକ୍ଷରେ କିଛି

ପାରିଲେ ନାହିଁ । ନାରୀ ଧର୍ଷଣ ଓ ଅନ୍ୟ କେତେକ ଘଟଣାପରେ ଆଦିବାସୀମାନେ ଯେଉଁଭାବରେ ହତ୍ୟାକାଣ୍ଡ ଘଟାଇ ଥାଆନ୍ତି, ସେଥି ମଧ୍ୟରୁ କେତେକ କ୍ଷେତ୍ରରେ କଟାମୁଣ୍ଡ ନେଇ ଥାନାରେ ନିଜେ ହାଜର ହୋଇ କହନ୍ତି ଯେ ନିର୍ଦ୍ଦିଷ୍ଟ ଘଟଣାକୁ ଅନ୍ୟାୟ ବୋଲି ବିଚାର କରି ଆମେ ଅନ୍ୟାୟକାରୀର ମୁଣ୍ଡ କାଟିଦେଲୁ । କିନ୍ତୁ ନମ୍ବସିଣ୍ଡଙ୍କ ହତ୍ୟାକାଣ୍ଡ ପରଦିନ ବାଲିଗମାରରେ ଜମି ଓ ନୋଳାବାଡ଼ି ଲୁଟ ହୋଇଥିଲା । ସରକାର ସେଥିରୁ ଯଥେଷ୍ଟ ଚେତାବନୀ ପାଇବା ଉଚିତ୍ ଥିଲା, ଅହିଂସାବାଦୀମାନେ ଯଥେଷ୍ଟ ସନ୍ଦିଗ୍ଧ ହେବା ଉଚିତ ଥିଲା, ବାମପନ୍ଥୀମାନେ ନିଜର ସବଳ ଯୁକ୍ତି ଗୁଡ଼ିକୁ ଅଧିକ ପ୍ରାଞ୍ଜଳଭାବେ ଲୋକଙ୍କୁ ବୁଝାଇବା ଉଚିତ ଥିଲା । ସରକାର ନିଜର ମୌଳିକ ଦାୟିତ୍ୱ ଭୁଲିଯାଇ ବିକାଶ ମୂଳକ କାର୍ଯ୍ୟକ୍ରମରେ ପ୍ରଚାର କଲେ । ପଞ୍ଚାୟତ, ପଞ୍ଚାୟତ ସମିତି ଓ ଜିଲ୍ଲା ପରିଷଦ ବ୍ୟବସ୍ଥାକୁ ପ୍ରଚଳନ କରାଇଲେ । ବିଜୟ ନଗର ରାୟପୁର ରେଳପଥ ହେବା ଦିନଠାରୁ ଗତ ୪୦ବର୍ଷ ଭିତରେ ରାୟଗଡ଼ା ଅଞ୍ଚଳରେ ଚିନି କାରଖାନା, ଫେରୋମାଙ୍ଗାନିଜ୍, କାଗଜ, ଫେରୋସିଲିକନ, କାରଖାନା ଓ କରତକଳ ଗୁଡ଼ିଏ ବସିଲା । କିନ୍ତୁ ତାହା ଆଦିବାସୀର ମୌଳିକ ବିକାଶରେ ସହାୟକ ହେଲା ନାହିଁ, ଏସବୁ କାରଖାନାରେ ଯେଉଁମାନେ କାମକଲେ, ସେମାନେ ଲୁଗା ପିନ୍ଧିଲେ ସ୍ନୋ, ପାଉଡର, ସାବୁନ, ଅତରର ବ୍ୟବହାର ଜାଣିଲେ, କିନ୍ତୁ ଆଦିବାସୀ ଜୀବନର ଭଲଗୁଣ ଗୁଡ଼ିକ ଭୁଲିଗଲେ । ପଡ଼ୋଶୀମାନଙ୍କ ସହ ସେମାନଙ୍କ ସମ୍ପର୍କ କମ୍ ରହିଲା । ଯେଉଁମାନେ ଷ୍ଟେଟ ସରକାରୀ ଶୃଙ୍ଖଳା କଲେ ସେମାନେ ମଧ୍ୟ ତାହାହିଁ କଲେ । ୧୯୬୧ରେ ଓଡ଼ିଶାର ବିଜୁ ବାବୁଙ୍କ ନେତୃତ୍ୱରେ ସରକାର ଗଢ଼ାଗଲା । ୧୯୬୩ରେ ସେ କାମରାଜ ଯୋଜନାରେ ଇସ୍ତଫା ଦେବାରୁ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ହେଲେ, ୧୯୬୫ରେ ସଦାଶିବ ତ୍ରିପାଠି ମୁଖ୍ୟମନ୍ତ୍ରୀ

...ନ୍ତାଇ ୧୯୬୭ ମସିହା ପର୍ଯ୍ୟନ୍ତ ରହିଥିଲେ । ସେମାନେ ନବକୃଷ୍ଣ ଚୌଧୁରୀ ଓ ରମାଦେବୀଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ । କିନ୍ତୁ ଆଦିବାସୀ ମାନଙ୍କ ସମସ୍ୟା ସମାଧାନ ପାଇଁ ସର୍ବୋଦୟ ମଣ୍ଡଳକୁ ଗ୍ରହଣ କରି ନଥିଲେ । ସେତେବେଳେ ଟି.ସଙ୍ଗାନା ଉପମନ୍ତ୍ରୀ ଓ ପରେ ମନ୍ତ୍ରୀଭାବେ ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ ଦାୟିତ୍ୱରେ ରହିଥିଲେ । ସେ ସଦାଶିବ ବାବୁଙ୍କ ସାହାଯ୍ୟରେ ରାଜନୀତିକୁ ଆସି-ଥିଲେ । ୨୧ର ପାର୍ଲାମେଣ୍ଟ ସଦସ୍ୟ ଥିଲେ । ସେ ଆଦିବାସୀ ।ପ୍ରଜାପୁର, କିନ୍ତୁ ଆଦିବାସୀ ମାନଙ୍କର ନେତୃତ୍ୱ ନେଇ ପାରିଲେ ନାହିଁ । ପାର୍ଲାମେଣ୍ଟ ସଭ୍ୟଥିବା ବେଳେ ନିଜ ଆୟର ଅଧିକାଂଶ ଆଦିବାସୀ ମାନଙ୍କୁ ଓ ସ୍ୱେଚ୍ଛାସେବୀ କର୍ମୀମାନଙ୍କୁ ଦାନକରି ଦେଉ-ଥିଲେ । ସେ ଦରିଦ୍ର ପରିବାରରେ ଜନ୍ମ ହୋଇଥିଲେ ଓ ଗରିବ ଲୋକଙ୍କ ଉନ୍ନତି ହେଉ ବୋଲି ତାଙ୍କର ଆନ୍ତରିକ ଇଚ୍ଛାଥିଲା । କିନ୍ତୁ ସେ ସେହିକଥା ରାଜ୍ୟର ଜନସାଧାରଣଙ୍କୁ କିମ୍ବା ଶୋଷଣ କାରୀ ମାନଙ୍କୁ ଦୃଢ଼ଭାବରେ ଚେତାଇ ଦେଇ ପାରି ନଥିଲେ । ମନ୍ତ୍ରୀ ଭାବେ ଆଦିବାସୀ ମାନଙ୍କ ପାଇଁ ସେ କେତେକ ବିଶେଷ ଯୋଜନା ପ୍ରବର୍ତ୍ତନ କରିଥିଲେ । ଡଙ୍ଗରିଆ କନ୍ଧ ଓ ବଣ୍ଡାମାନଙ୍କ ପାଇଁ ସେ ଉନ୍ନୟନ ଯୋଜନା କରିଥିଲେ । ଆଦିବାସୀ ମାନଙ୍କୁ ଶୋଷକମାନେ ଜିନିଷପତ୍ର କିଣାବିକା କଲାବେଳେ ଠକୁଥିଲେ ବୋଲି ସେ ସୁଲଭ ମୂଲ୍ୟ ଦ୍ରବ୍ୟ ବିକ୍ରୟ ଦୋକାନର ପରିକଳ୍ପନା କରିଥିଲେ । ପୋଡୁଚାଷ କରୁଥିବା ଆଦିବାସୀମାନଙ୍କ ଉତ୍ଥାନ ପାଇଁ ଆଗରୁ ବ୍ୟବସ୍ଥା ଥିଲା ଓ ତାଙ୍କ ଅମଳରେ ଅଧିକ ଅର୍ଥ ବ୍ୟବସ୍ଥା ହେଲା । ସେ ଅନେକ ଆଶ୍ରମସ୍କୁଲ ଓ ସେବାଶ୍ରମ ସ୍କୁଲ ସ୍ଥାପନ କରାଇ ଥିଲେ । କିନ୍ତୁ ଏସବୁ ସତ୍ତ୍ୱେ ଆଦିବାସୀ ମାନେ ତାଙ୍କୁ ନିଜର ନେତାରୂପେ ଗ୍ରହଣ କରି ନଥିଲେ, କାରଣ ସରକାରୀ କଳ ବାହାରେ ସେ ସାଧାରଣ ଆଦିବାସୀଙ୍କ ନିକଟତର ହୋଇ ପାରି ନଥିଲେ ଓ ସରକାରୀକଳର

ହୋଇ ନ ଥିବା ସନ୍ତାଳ ଆଦିବାସୀ ମାନଙ୍କୁ ଶୋଷଣମୁକ୍ତ କରି ପାରି ନଥିଲେ । ତାଙ୍କର ଯୋଜନା ସ୍ୱରୂପ ଯେଉଁ ଉଦ୍ଦେଶ୍ୟରେ ହୋଇଥିଲା, ତାହା ଆଶାନୁରୂପ ଫଳପ୍ରଦ ହେଲା ନାହିଁ ।

ଜିଲ୍ଲାର ଶାସନ ଦାୟିତ୍ୱରେ ଯେଉଁମାନେ ରହିଲେ ସେମାନେ ଆଇନ ଅନୁଯାୟୀ କାର୍ଯ୍ୟ କରିବା ବ୍ୟତୀତ ଅନ୍ୟ କିଛି କରିବାକୁ ବୁଝିଲେ ନାହିଁ । ଶୋଷଣ ବନ୍ଦ କରିବା ପାଇଁ ଆଇନରେ ପର୍ଯ୍ୟାପ୍ତ ବ୍ୟବସ୍ଥା ନଥିଲା । ଗୋଟିଏ ଉଦାହରଣ ଦେଲେ ଏହା ପରିଷ୍କାର ହେବ । ଶୋଷଣକାରୀମାନେ ଅଡା, ମାଣ, ଡାମ୍ବି ଇତ୍ୟାଦି ନାନା ପ୍ରକାର ପାତ୍ରରେ ଜିନିଷ କିଣନ୍ତି । ସରକାର ସେତେବେଳେ କିଲୋଗ୍ରାମ୍ ଓଜନ ପ୍ରଚଳନ କରିସାରିଥିଲେ । ଯଦି କଟକ ବଜାରରେ ମାଣ୍ଡିଆ କିଲୋ ଏକଟଙ୍କା ଦରରେ ବିକ୍ରି ହେଉଥିଲା, କ କରଗୁମା ହାଟରୁ କୁମୁଟି ବେପାରୀ ଆଦିବାସୀଙ୍କଠାରୁ ଟଙ୍କାରେ ୪କିଲୋ ଓଜନର ମାଣ୍ଡିଆ କିଣୁଥିଲେ, କାରଣ ହାଟରେ କିଲୋଗ୍ରାମ ବ୍ୟବହାର ହେଉ ନଥିଲା । ବେପାରୀ ପାଖେ ନାମକୁ କିଲୋ ରହୁଥାଏ, କିନ୍ତୁ ବଡ଼ ବଡ ମାଣରେ ଜିନିଷ କିଣାଯାଏ । ମାପ ଓଜନ ବିଭାଗ ଇନ୍‌ସପେକ୍‌ଟର ସେହି ବେପାରୀଙ୍କୁ ଦଣ୍ଡ ଦେବାର ବ୍ୟବସ୍ଥା ଆଇନରେ ନଥିଲା, ଧରି କେସ୍ କରିବାର ବ୍ୟବସ୍ଥା ଏପରି ତ୍ରୁଟି ପୂର୍ଣ୍ଣ ଯେ ବେପାରୀ ସହଜେ ଛାଡ଼ି ପାଇ ଯାଉଥିଲା । କୋରାପୁଟ ଆଦିବାସୀର ଉତ୍ପାଦିତ ଫସଲର ଏକପଞ୍ଚମାଂଶ ଏହିପରି ଠକାମୀରେ ଯାଉଥିଲା । Natural Justice ବା ନୈତିକ ଦାୟିତ୍ୱ, will of the people ବା ଜନଗଣର ଇଚ୍ଛା ଇତ୍ୟାଦି ସମ୍ପର୍କରେ ବୁଝିବା ଟିଲ ସ୍ତର ଶାସକର କର୍ତ୍ତବ୍ୟ ନୁହେଁ ବୋଲି ସେମାନେ ବିଚାର କରୁଥିଲେ କିନ୍ତୁ ସ୍ୱାଧୀନତା ଆନ୍ଦୋଳନ ସମୟରେ ମହାତ୍ମାଗାନ୍ଧିଙ୍କ ଠାରୁ ଆରମ୍ଭ କରି ସାଧାରଣ କର୍ମୀମାନେ ଲୋକଙ୍କୁ ବୁଝାଉଥିଲେ ଯେ ସ୍ୱାଧୀନତା ଆସିଲେ ରାମରାଜ୍ୟ ପରି ନ୍ୟାୟ ମିଳିବ ।

କାର୍ଯ୍ୟତଃ ଦେଖାଗଲା ଷଷ୍ଠ ଦଶକରେ କୋରାପୁଟରେ ଶିଳ୍ପ ବିପ୍ଳବର ମୂଳଦୁଆ ପଡ଼ିଲା । ବାଲିମେଳା ଜଳବିଦ୍ୟୁତ ଯୋଜନା, ସୁନାବେଡ଼ା କାରଖାନା, କୋରାପୁଟ ଜୟପୁର କୋଟପାଡ଼ ଇତ୍ୟାଦିକୁ ରେଳପଥ ନିର୍ମାଣ ଇତ୍ୟାଦି ଜାତୀୟ ସ୍ୱାର୍ଥ ସାଧନର ସହାୟକ ହେଲା, କିନ୍ତୁ ତାହାର ଲାଭ ସ୍ଥାନୀୟ ଆଦିବାସୀମାନେ ପ୍ରାପ୍ତ ପାଇଲେ ନାହିଁ । ଶିଳ୍ପ ବିପ୍ଳବ ସମୟକୁ ମାଟ୍ରିକ ଓ ଆଇ.ଟି.ଆଇ ପାଶ୍ କରିଥିବା ଯଥେଷ୍ଟ ଆଦିବାସୀ ପିଲା ମିଳିଲେ ନାହିଁ, କାରଣ ଶିକ୍ଷା ଦାନ କାହାମାନେ ସେପରି ନିଷ୍ଠାର ସହ ଆଦିବାସୀମାନଙ୍କୁ ଗୋଡ଼ାଇ ବିଦ୍ୟାଳୟକୁ ଆଣି ନଥିଲେ । ଯେଉଁମାନେ ଏସବୁ ଶିଳ୍ପାଞ୍ଚଳରେ ୫ ମାଇଲ ପରିଧିରେ ରହିଥିଲେ, ସେମାନେ କୁଲି, ମୂଲିଆ, ଘର ଚାକର ବା ନୌକର ବା ଚାକରାଣୀ, ସାମୟିକ ଭାବେ କାମ କରୁଥିବା ବାସନ ମାଜିବା ଅବା ପାଣି ଆଣିବା ଲୋକଭାବେ କାମ କଲେ । ଗୋଟିଏ ଶିଳ୍ପାଞ୍ଚଳରେ ୨ଜଣ ଅଧିବାସୀ ଯୁବକ ଏପ୍ରକାର କଥାବାର୍ତ୍ତା ହେଉଥିଲେ ତାର ଏକ ନମୁନା ଦିଆଗଲା ।

**ଉତୁନା**—ଆରେ ଯୋଗୀ, ଆମଘରଟି ଏହି ରାସ୍ତାପାଖେ କେଉଁଠି ଥିଲା କହତ ?

**ଯୋଗୀ**—ହେଇମ, ଯେଉଁଠି ସେ ଗୋରା, ମୋଟି, କଅଣ କଅଣ କହୁଥିବା ସ୍ତ୍ରୀ ଲୋକଟି ଯେଉଁ କୋଠାରେ ରହୁଛି, ସେଇଠି ତବ ଆମ କୁଡଆଟି ଥିଲା । ତାକୁ ଲାଗି ଯେଉଁ ହୋଟେଲ ହୋଇଛି, ଯେଉଁଠି କେତେ ଖଜା ପିଠା ଓ କେତେ କଅଣ କିଣାବିକ୍ରି ହଉଛି, ସେଇଠି ତବ ଆମ ଗାଈ ଖୁଆଁଡଥିଲା । ତୋର କ'ଣ ମନେ ନାହିଁ, ସେ ଚକ୍କର ଚଟାବାଘ ସେଦିନ ଭେକଲା ହୋଇଥିଲା ବୋଧେ, କେମିତି ସେ ବଛୁରିଟାକୁ ମାରିନେଇ ପଳାଇଲା । ବଡ଼ ଗାଈଟା ହମ୍ବାରଡ଼ି ପକାଇଲା ।

**ଉତ୍ତୁନା**—ତୋ ମାଆ ଚଢାଇ ପରବକୁ ତୋତେ ଗୋଟିଏ ନୂଆ ଗାମୁଛା କିଣି ଦେଇଥିଲି । ଆରେ ସାଙ୍ଗ, ମନେ ନାହିଁ, ଆମେ ନୂଆ ନୂଆ ପିକା ଖାଉଥାଆନ୍ତୁ, ପିକାରୁ ନିଆଁ ବାଜି ନୂଆ ଗାମୁଛାରେ କଣାଟାଏ ହୋଇଗଲା, ସେହି ଯେଉଁଠି ଲୁହା ଫାଟକଟା ଲାଗିଛି, ସେଇଠି ପୁଆଳ ଗଦା ହୋଇଥିଲା । ଆମେ ତାରି ସନ୍ଧିରେ ବସି ପିକା ଖାଉଥିଲେ ନା !

**ଯୋଗୀ**—କ'ଣ ହେଲାରେ, ଆମକୁ ଏ ଖରାପ ଲୋକ ଗୁଡ଼ାକ ଏଠୁ ତଡ଼ି ଦେଲେ । ଭଲ ହୋଟେଲ କରି ବେଶୀ ବେଶୀ ଖଜାପିଠା ଖାଉଛନ୍ତି, ଇଲେକ୍ଟ୍ରି ଆଲୁଅ ଜଳାଉଛନ୍ତି, ମୋଟା ମୋଟା ଗୋରା ଗୋରା ସ୍ତ୍ରୀ ଲୋକ ଗୁଡ଼ାକ ରଖିଛନ୍ତି, ଆମଘର ସବୁ ଭାଙ୍ଗି ଦେଲେ ରେ ।'

ଏହା ପରର କଥୋପ କଥନ ନିଶ୍ଚିତ ଭାବେ ହିଂସାର ଉଦ୍ରେକ କରାଇବ । ତେଣୁ ଦିଆଗଲା ନାହିଁ । କୋରାପୁଟ ଜିଲାରେ ଶିଳ୍ପ ବିପ୍ଳବର ଫଳାଫଳ ନିଶ୍ଚିତ ଭାବେ ସମାଜ ସେବୀ ମାନଙ୍କ ପକ୍ଷେ ସ୍ୱାଗତ ଯୋଗ୍ୟନୁହେଁ । ଆଦିବାସୀ ପୂର୍ବରୁ ଯେପରି ଶୋଷିତ ହେଉଥିଲା, ତାହା ସାମାନ୍ୟ ଭାବେ କମିଲା ସତ୍ୟ, କିନ୍ତୁ ଶାସନର ତଳ ସ୍ତରରେ ଥିବା ଲୋକେ ଶୋଷକ ଗୋଷ୍ଠୀ ସହ ପୂର୍ବପରି ସୁସମ୍ପର୍କ ରକ୍ଷାକଲେ । ମଦଭାଟି ନିଲାମ ନେଉଥିବା ଲୋକ ସଂପ୍ରୃକ୍ତ ସରକାରୀ କର୍ମଚାରୀ ମାନଙ୍କୁ ନିର୍ଦ୍ଦିଷ୍ଟ ଉପାୟରେ ସନ୍ତୁଷ୍ଟ କରୁଥିଲେ । କେତେକ କର୍ମଚାରୀ ଏହାକୁ ଭାଟି ଆଲାଉନସ କହୁଥିଲେ । ଯେଉଁ ଜମି ଆଦିବାସୀ ନୂଆ କରି ଆବାଦ କରିଥିଲା, ତାହା ତା'ର ନାମରେ ପଟ୍ଟା କରି ଦିଆଯାଉନଥିଲା, କିନ୍ତୁ ବେଆଇନ ଭାବେ ଦଖଲ କରୁଥିବାରୁ ତାଠାରୁ ପଇସା ଅସୂଲ କରାଯାଉଥିଲା । ମୃତ୍ତିକା ସଂରକ୍ଷଣ ବିଭାଗର କେତେକ କର୍ମଚାରୀ ଜଙ୍ଗଲ ଅଞ୍ଚଳରେ ଜମି କରାଇଦେବେ କହି ପଇସା ଅସୂଲ କରିଥିଲେ । ଜଙ୍ଗଲ ବିଭାଗ

ଲୋକେ ଜଙ୍ଗଲରୁ ବେଆଇନ କାଠ କାଟିବା ଅପରାଧରେ ଓ ପୋଡ଼ୁ ଚାଷ କରିବା ନାମରେ ଆଦିବାସୀଙ୍କୁ କୋର୍ଟରେ ହାଜର କରାଉଥିଲେ । ଆଦିବାସୀମାନେ ଅଭିଯୋଗ କରୁଥିଲେ ଯେ ସମବାୟ ବିଭାଗର କର୍ମଚାରୀମାନେ ଋଣ ନଦେଇ ଆଦିବାସୀଙ୍କ ଟିପଚିହ୍ନ ନେଇ ଋଣ ଦେଇଛନ୍ତି ବୋଲି ଦର୍ଶାଉଥିଲେ । ଆଦିବାସୀ ଗ୍ରାମ ମଙ୍ଗଳ ବିଭାଗ ଆଦିବାସୀମାନଙ୍କୁ ଛେଳି ବାଖରି ଦେଇ ବଳଦ ଦିଆଗଲା ବୋଲି ବିଲ୍ କରୁଥିଲେ । ଶିକ୍ଷା ଓ ଆଦିବାସୀ ମଙ୍ଗଳ ବିଭାଗ ସ୍କୁଲରେ ଶିକ୍ଷକ ନିଯୁକ୍ତ କରୁଥିଲେ କିନ୍ତୁ ଶିକ୍ଷକମାନେ ପରିଦର୍ଶକମାନଙ୍କୁ ହାତ କରି ସ୍କୁଲରୁ ଅନୁପସ୍ଥିତ ରହିଲେ । ଏହିପରି ଅଧିକାଂଶ ସରକାରୀ ବିଭାଗ ବିରୁଦ୍ଧରେ ଆଦିବାସୀ ଲୋକେ ନିଷ୍କ୍ରିୟତା ଓ ଶୋଷଣରେ ସମର୍ଥନର ଅଭିଯୋଗ କରିଥିଲେ ।

ସେମାନେ ରାଜନୈତିକ କର୍ମୀମାନଙ୍କୁ ମଧ୍ୟ ପରିପୂର୍ଣ୍ଣ ବିଶ୍ୱାସ କରିପାରିଲେ ନାହିଁ । ୧୯୬୦ ମସିହା ପୂର୍ବରୁ ରାଧା ମୋହନ ସାହୁ, ରାଧାକୃଷ୍ଣ ବିଶ୍ୱାସରାୟ ଓ ସଦାଶିବ ତ୍ରିପାଠୀଙ୍କ ବ୍ୟକ୍ତିଗତ ନିଜର ପ୍ରଭାବ ବଳରେ କୌଣସି ରାଜନୈତିକ ନେତା ପ୍ରତିଷ୍ଠିତ ହୋଇ ନଥିଲେ । ରାଧାକୃଷ୍ଣ ବିଶ୍ୱାସରାୟ ରାଜନୀତିରୁ ଅବସର ନେଇଗଲେ, ରାଧାମୋହନ ସାହୁଙ୍କର ଦେହାନ୍ତ ହୋଇଗଲା, ସଦାଶିବ ବାବୁଙ୍କର ଜନସମ୍ପର୍କ ଅତ୍ୟନ୍ତ କମଥିଲା । ଲକ୍ଷ୍ମୀଚନ୍ଦ୍ର ଦାସ ସାମ୍ବାଦିକତାରେ ସମୟ ଦେଲେ । ରାଜକୋଣ୍ଡା ଜଗନ୍ନାଥ ରାଓ ଜୟପୁର ରାଜାଙ୍କ ଓକିଲ ଭାବେ ଜୀବନ ଆରମ୍ଭ କରି ପାର୍ଲିମେଣ୍ଟ ସଦସ୍ୟ ଓ ପରେ କେନ୍ଦ୍ର ସରକାରରେ ୨ଥର ରାଷ୍ଟ୍ରମନ୍ତ୍ରୀ ରହିଲେ । କିନ୍ତୁ ଆଦିବାସୀ ମାନଙ୍କ ଶୋଷଣକୁ ଘୃଣା କରୁଥିଲେ । କିନ୍ତୁ ୧୯୬୨ ମସିହାରେ ସେ ଗିରଫ ହୋଇଗଲେ ଓ ଜେଲରୁ ଫେରି ପାରିବାରିକ ବ୍ୟାପାରରେ ଅଧିକ ସମୟ ଦେଲେ । ରଚନାତ୍ମକ କର୍ମୀମାନଙ୍କ ମଧ୍ୟରୁ କେବଳ

ନବଜୀବନ ମଣ୍ଡଳ ଓ କସ୍ତୁରବା ସ୍ମାରକନିଧିର କର୍ମୀମାନେ ଉଣା ଅଧିକେ ନିଜର ସଂଗ୍ରାମୀ ମନୋବୃତ୍ତି ରକ୍ଷା କରିଥିଲେ । ତା ଛଡ଼ା ଭୂଦାନ, ଗ୍ରାମଦାନ, ଖଦି କମିଶନ, ଖଦି ମଣ୍ଡଳ, ସର୍ବସେବା ସଂଘ ଓ ଅନ୍ୟାନ୍ୟ କେତେକ ଅନୁଷ୍ଠାନରକର୍ମୀ କୋରାପୁଟ ଜିଲାରେ ସମାଜ ସେବା ନାମରେ ରହିଥିଲେ । କିନ୍ତୁ ଆଦିବାସୀମାନେ ଭାବୁ-ଥିଲେ ଯେ ସେମାନେ ଏହି କର୍ମୀମାନଙ୍କ ଦ୍ଵାରା କୌଣସି ଉପକାର ପାଉ ନାହାନ୍ତି । ସେହି କର୍ମୀମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟକ୍ତିଗତ ସମ୍ପତ୍ତି ଠୁଳକଲେ ଓ ଅଧିକ ଲାଭ ନେଲେ । ତାଙ୍କ ବିରୁଦ୍ଧରେ ଅଭି ଯୋଗ ହେଲେ ସେମାନେ ଉତ୍ତର ଦେଲେ "ହଇହୋ, ତୁମକୁ କଣ ଦେଖା ଯାଉନି, ଶୁଣ୍ଡି, କୁମୁଟି ସାହୁକାରମାନେ କିପରି ଶୋଷଣ କରୁଛନ୍ତି,ସରକାରୀ କର୍ମଚାରୀମାନେ କିପରି ଶୋଷଣ କରୁଛନ୍ତି ! ଦେଖ ଯେତେଲୁଳ ବ୍ୟବସାୟୀକୁ, ୧ କିଲୋ ତେନ୍ତୁଳକୁ ୧୫ ପଇସା ଦାମରେ କିଣୁଛି, ସେଠି ନିକିତିରେ କିଣୁଛି ତାହାଦ୍ଵାରା ଓଜନରେ ଠକୁଛି, ଆମେ ବନବାଣିଜ୍ୟ ସମବାୟ ସମିତି କରିଛୁ । ତା ଜରିଆରେ ଆମେ ଜିନିଷ କିଣିଲା ବେଳେ ଓଜନରେ ଠକୁ ନାହୁଁ, ଅନ୍ୟମାନେ ଯେତିକି ପଇସା ଦେଉଛନ୍ତି ବେଳେ ବେଳେ ଆମେ ତା'ଠାରୁ ପଇସେ ଦୁଇ ପଇସା ଅଧିକ ଦେଉଛୁ ସିନା, କେବେ କମ୍ ଦେଉନାହୁଁ । ତେଣୁ ଆଦିବାସୀ ଲାଭବାନ ହେଉଛି । ଆମେ ସଚ୍ଚୋଟ୍ ଲୋକ ।"

ସେମାନେ କମ୍ ଶୋଷଣ କରୁଥିଲେ, ଏହା ସତ୍ୟ, କିନ୍ତୁ ଶୋଷଣ କରୁନଥିଲେ ଏହା ସତ୍ୟ ନୁହେଁ । ଆଦିବାସୀ ସେମାନଙ୍କୁ ସାଥୀଭାବେ ଗ୍ରହଣ କଲେନାହିଁ । ଉଚ୍ଚସ୍ତରର ସର୍ବୋଦୟ କର୍ମୀମାନେ ସେମାନଙ୍କୁ ସୁଧାରିବାକୁ ଚେଷ୍ଟାକରି ସଫଳ ହେଲେ ନାହିଁ, ସେମା-ନଙ୍କ ମୂଳ ଉପାଡ଼ି ଦେଇ ପାରିଲେ ନାହିଁ । କେତେକ ବିଶ୍ଵନାଥଙ୍କୁ ଆକ୍ଷେପ କରି କହିଲେ "ଆମେ ତ ବିଶ୍ଵନାଥ ଆଜ୍ଞାଙ୍କ ଜରିଆରେ

ସାହାଯ୍ୟ ବା ଅନୁଦାନ ଇତ୍ୟାଦି ଆଣୁନାହୁଁ । ଆମେ ସଂଘ, ସମିତି ସମବାୟ ଇତ୍ୟାଦି କରି ଟଙ୍କା ଆଣୁଛୁ । ଆଦିବାସୀଙ୍କ ପାଇଁ କାମ କରୁଛୁ ଆମକୁ ଏପରି ସମାଲୋଚନା ହେଲା ଭଲହେଲା, ଆମେ ଆଉ ଏଥିର ସେହି ବିଶୁଦ୍ଧ ସର୍ବୋଦୟ କର୍ମୀମାନଙ୍କ ସହ ସମ୍ପର୍କ ରଖିବୁ ନାହିଁ ।

୧୯୫୨ ମସିହାର ବିଶ୍ୱନାଥ,କେହି ସାଙ୍ଗରେ ଯାଆନ୍ତୁ ଅବା ନ ଯାଆନ୍ତୁ, ସଂସ୍ଥାର ସାହାଯ୍ୟ ମିଳୁ ଅବା ନମିଳୁ, ମୁଁ ଯାହା କରୁଛି ତାହା ବିବେକ ସମ୍ମତ, ତେଣୁ ତାହା ଠିକ୍ । ୧୯୬୫ ପରେ ତାଙ୍କର ଚିନ୍ତା ବଦଳିଗଲା । ସେ ଆଉ କଞ୍ଚାକର୍ମୀ ନୁହଁନ୍ତି, ପରୀକ୍ଷା ଦେଇ ପାସ୍ କରିଥିବା ଜଣେ ଜଣାଶୁଣା ଲୋକ, କାହାର ଶତ୍ରୁ ନୁହଁନ୍ତି । ସେ ଆସିଛନ୍ତି ଗାଆଁ ଗଢ଼ିବାକୁ, ପୁରୁଣା ଅସଭ୍ୟ କଥା ନଷ୍ଟ କରିବାକୁ ନୁହେଁ, ବେଠି ଲୋପ କରିବାକୁ ନୁହେଁ, କୌଣସି ଜିନିଷ ଜୁଲ୍ କରିବାକୁ ନୁହେଁ, ସେ ସଜାଡ଼ିବେ, ଭଲ ମନ୍ଦ ମିଶାଇ ଚଳାଇବେ । ଶୁଦ୍ଧ ଅଶୁଦ୍ଧ ମିଶାଇ ଗାଇବେ । ଆଦିବାସୀ ଦେଖିଲେ ୧୯୫୨ରେ ଆଜ୍ଞା ନ୍ୟାୟର ପକ୍ଷ ସମର୍ଥନ କରି ଅନ୍ୟାୟକୁ ବିରୋଧ କରୁଥିଲେ । ୧୯୬୩ ମସିହାରେ ତାହାହିଁ କରିଥିଲେ । କିନ୍ତୁ ଆଜି ସେ ଶୋଷଣ ମୁକ୍ତି ପାଇଁ ଯେତିକି ସମୟ ଦେଉଛନ୍ତି, ତା'ଠାରୁ ଅଧିକ ସମୟ ଦେଉଛନ୍ତି ଖଦୀ ସଂଗଠନ, ଗ୍ରାମଦାନ, ଭୂଦାନ, ଆଦିବାସୀ ପିଲାଙ୍କ ଶିକ୍ଷା ଓ ସ୍ୱାସ୍ଥ୍ୟପାଇଁ । ଶୋଷଣ ବିରୁଦ୍ଧରେ ସଂଗ୍ରାମ ତାଙ୍କର ଏକମାତ୍ର ପରିଚୟ ନୁହେଁ । ତାଙ୍କ ଆଦିବାସୀ ସମ୍ମାନ ଦେଲେ, ଜଣେ ସାଧୁ ପୁରୁଷ ଭାବେ, ନିଜ ଲୋକ ରୂପେ, କିନ୍ତୁ ଶୋଷଣ ବିରୁଦ୍ଧରେ ସଂଗ୍ରାମ ପାଇଁ ଅନ୍ୟ ଜଣେ ଲୋକ ଖୋଜିଲେ, ଯାର ଏକମାତ୍ର ସ୍ଲୋଗାନ ହେବ, ସଂଗ୍ରାମ, ସଂଗ୍ରାମ, କେବଳ ସଂଗ୍ରାମ ।

ବିଶ୍ୱନାଥଙ୍କର ୧୯୪୦ ମସିହାରେ ଲକ୍ଷ୍ୟଥିଲା, ଯାହା ଅନ୍ୟାୟ, ତା'ର ବିରୋଧ କରାଯିବ, ନ୍ୟାୟ ମିଳିବା ଯାଏ ସଂଗ୍ରାମ ଚାଲୁ ରହିବ, ଅନ୍ୟ କୌଣସି କାମ ହାତକୁ ନଆଯିବ ନାହିଁ । ୧୯୬୦ ମସିହାକୁ ବିଶ୍ୱନାଥ ପରିବର୍ତ୍ତିତ ପରିସ୍ଥିତିରେ ଦେଖିଲେ ଶୋଷକ ଗୋଷ୍ଠି ବିରୁଦ୍ଧରେ ଆନ୍ଦୋଳନ କରିବା ପୂର୍ବରୁ ଶାସନ କଳର ଦୃଷ୍ଟି ଆକର୍ଷଣ କରାଯିବା ଉଚିତ । କିନ୍ତୁ ବାରମ୍ବାର ଦୃଷ୍ଟି ଆକର୍ଷଣ କଲା ପରେ ସେ କାର୍ଯ୍ୟ ଯଦି ସାଧନ ନହେଲା, ତେବେ ବିଶ୍ୱନାଥ ଆଉ ତା' ପଛରେ ଲାଗି ପାରିଲେ ନାହିଁ । ତାଙ୍କ ଦୃଷ୍ଟିକୁ ଯେତିକି ଅନ୍ୟାୟର ଚିହ୍ନ ଅଣାଗଲା, ସେ ତା'ର ସମାଧାନ କରିବାକୁ ଚେଷ୍ଟାକଲେ, କିନ୍ତୁ ବିଶ୍ୱନାଥଙ୍କ ନେତୃତ୍ୱରେ ଆଦିବାସୀର ସ୍ୱାର୍ଥ ସଂରକ୍ଷଣ ପାଇଁ ଆଉ ଧାମୂହିକ ଆନ୍ଦୋଳନ ହୋଇନାହିଁ ।

ତାଙ୍କର ସଂସ୍କାର ମୂଳକ କାର୍ଯ୍ୟ ଅବ୍ୟାହତ ରହିଲା । ଖଦି ମଣ୍ଡଳ ସଭାପତି ଭାବେ ୧୯୬୩ ମସିହାରୁ ଖଦି କାର୍ଯ୍ୟକ୍ରମର ପ୍ରସାର କରାଇବାକୁ ଚେଷ୍ଟାକଲେ । ସ୍ୱାବଲମ୍ବୀ ପରିବର୍ତ୍ତେ ବ୍ୟବସାୟିକ ଖଦି କାର୍ଯ୍ୟକ୍ରମ ଚାଲିଲା । ସ୍ୱାଧୀନତା ପରେ ଯେଉଁ ବିଶ୍ୱନାଥ ସ୍ୱାବଲମ୍ବୀ ଖଦି ପ୍ରସାର କରାଇବା ସଙ୍ଗେ ସଙ୍ଗେ ଆଦିବାସୀକୁ ତା ସହ ଘନିଷ୍ଠଭାବେ ସଂପୃକ୍ତ କରିଥିଲେ ସେ ବ୍ୟବସାୟିକ ଖଦି ମାଧ୍ୟମରେ ସେପରି ଆଦିବାସୀମାନଙ୍କ ଜୀବନକୁ ଛୁଇଁ ପାରିଲେ ନାହିଁ । ଶେଷରେ ଆନୁଷ୍ଠାନିକ ବିଶୃଙ୍ଖଳା ଯୋଗୁଁ ଖଦି ମଣ୍ଡଳର କାର୍ଯ୍ୟ ପ୍ରସାରିତ ହୋଇପାରିଲା ନାହିଁ । ବିଭିନ୍ନ ରିଲିଫ୍ କାମରେ ସେ ଉପସ୍ଥିତ ରହିଲେ । ରାଉରକେଲା ୧୯୬୪ ମସିହାର ହିନ୍ଦୁ ମୁସଲମାନ ଗଣ୍ଡଗୋଳ ଓ ୧୯୬୭ ମସିହା ପାରାଦୀପ ମାର୍ଶାଘାଇ ଅଞ୍ଚଳରେ ବାତ୍ୟା ଇତ୍ୟାଦିରେ ସେ ଗଠନମୂଳକ କାମ କରିଥିଲେ । କୋରାପୁଟ ଜିଲ୍ଲାର ଗ୍ରାମଦାନ ଗ୍ରାମରେ

ଗ୍ରାମପାର୍ଟି ଗଠନ କରି ସାହୁକାରମାନଙ୍କ ଶୋଷଣ ବିରୁଦ୍ଧରେ ପଦକ୍ଷେପ ନେଇଥିଲେ । ଅନେକ ଗ୍ରାମରେ ସାମୂହିକ ପାଣ୍ଠି ସଂଗୃହୀତ ହୋଇ ରହିଥିଲା ଓ କମ୍ ସୁଧରେ ଋଣ ଦିଆ ଯାଉଥିଲା । କ୍ରମେ ଗ୍ରାମବାସୀ ଗ୍ରାମରେ ଲୋକଙ୍କ ଏକତା ଜମିଗଲା, ନିଜ ଉପରେ ଫେରିଆସୁଥିବା ବିଶ୍ୱାସ ପୁଣି ନଷ୍ଟ ହୋଇଗଲା ।

ବିଶ୍ୱନାଥ ବିଭିନ୍ନ ଗ୍ରାମରୁ ସୁଯୋଗ ପାଉନଥିବା ଆଦିବାସୀ ପିଲଙ୍କୁ ନେଇ ବିଭିନ୍ନ ବାଳାଶ୍ରମ ଓ ଶିକ୍ଷାନୁଷ୍ଠାନମାନଙ୍କରେ ଭର୍ତ୍ତି କରାଇଲେ । ଏହି ସମୟରେ ସେ କୋରାପୁଟ ସହରରେ ଥିବା ଜନକଲ୍ୟାଣ ଓ ରାୟଗଡ଼ାର ସେବା ସମାଜ ନାମକ ଦୁଇଟି ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହ ସମ୍ପର୍କ ରଖିଥିଲେ । ଭୁବନ ମୋହନ, ନାଗଭୂଷଣ, ହରିଶ୍ଚନ୍ଦ୍ର, ଜଗନ୍ନାଥ ମିଶ୍ର ଇତ୍ୟାଦିଙ୍କ ସହ ମଧ୍ୟ ତାଙ୍କର ବିଭିନ୍ନ ସମସ୍ୟା ସଂପର୍କରେ ଆଲୋଚନା ହେଉଥିଲା । କମ୍ୟୁନିଷ୍ଟମାନେ ଜାଣିଥିଲେ ଯେ ବିଶ୍ୱନାଥ ହିଂସାକାଣ୍ଡ ସହ କେବେ ନିଜକୁ ସଂପୃକ୍ତ କରିବେ ନାହିଁ । କିନ୍ତୁ ତାଙ୍କର ୧୯୪୧ ମସିହା ପରର କାର୍ଯ୍ୟକଳାପ ଆଦିବାସୀ ମାନଙ୍କ ଆଖି ଖୋଲି ଦେଇଛି । ସେମାନେ ସଂଗଠିତ ହୋଇ ପାରୁଛନ୍ତି । ନିଜର ପ୍ରିୟ ବ୍ୟକ୍ତିଙ୍କୁ ସମ୍ମାନ ଦେଉଛନ୍ତି, ତା'ର ଗତିବିଧିକୁ ସଂପୂର୍ଣ୍ଣ ଗୋପନୀୟ ରଖି ପାରୁଛନ୍ତି । ଶୋଷକ ଗୋଷ୍ଠୀକୁ ଚିହ୍ନି ପାରୁଛନ୍ତି, ବନ୍ଧୁମାନଙ୍କୁ ମଧ୍ୟ ଚିହ୍ନି ପାରୁଛନ୍ତି ।

କୋରାପୁଟ ଓ ଗଞ୍ଜାମ ଜିଲ୍ଲାର ଉପାନ୍ତ ଅଞ୍ଚଳ ଗୁଣୁପୁର ଓ ପାରଳାଖେମୁଣ୍ଡିକୁ କମ୍ୟୁନିଷ୍ଟମାନେ ନିଜର ପ୍ରଭାବ କ୍ଷେତ୍ର ରୂପେ ବାଛିବାର ଅନ୍ୟ କେତେକ କାରଣ ଥିଲା । ଅନୁସନ୍ଧାନରୁ ଜଣାପଡ଼େ ରାଜ୍ୟ ଶାସନ କେନ୍ଦ୍ର ଓ ଜିଲ୍ଲାଶାସନ କେନ୍ଦ୍ରଠାରୁ ଦୂରରେ ଥିବା ଅଞ୍ଚଳରେ ଗଣ୍ଡଗୋଳ ହେଲେ ତାହା ଦମନ କରିବା କଷ୍ଟକର ବୋଲି ଗଣ୍ଡଗୋଳକାରୀମାନଙ୍କର [illegible] ଥିଲା

୧୯୬୨ ମସିହାରେ ଚୀନ ଭାରତ ଉପରେ ଆକ୍ରମଣ କଲା ପରେ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ବିଭାଜନ ଆରମ୍ଭ ହେଲା ଓ ମାର୍କସିଷ୍ଟ-ମାନେ ଚରମପନ୍ଥୀ ନିକଟତର ହୋଇ ନିଜର ସଂଗଠନକୁ ଦୃଢ଼ କରିବାକୁ ଲାଗିଲେ । ବିଭିନ୍ନ ସଂସ୍ଥାର ଅନ୍ୟାୟ ଷଗ୍ରୁ ଓ ଜୁଲୁମ ଫଳରେ ଆଦିବାସୀମାନେ ଗୁଣୁପୁର ପାରଳାଖେମୁଣ୍ଡି ଅଞ୍ଚଳରେ ଏକ ସକ୍ରିୟ ବିରୋଧୀଗୋଷ୍ଠୀ ଖୋଜୁଥିଲେ । ରାଜନୀତି, ପଞ୍ଚାୟତ ନିର୍ବାଚନ ଓ ଭୋଟ ଇତ୍ୟାଦି ଫଳରେ ଗାଆଁ ଗାଆଁରେ ବିଭେଦ ଓ ଝଗଡ଼ା ପଶିଲା ନବଜୀବନ ମଣ୍ଡଳ ଓ ତା'ର ତତ୍କାଳୀନ ୨ ଜଣ ତୁଙ୍ଗ ନେତା ଶ୍ରୀମତୀ ମାଳତୀ ଚୌଧୁରୀ ଓ ବିଶ୍ୱନାଥ ଲୋକଙ୍କୁ ନିକଟତର କରି ପାରିଲେ ନାହିଁ । ଅଧିକନ୍ତୁ ଯେଉଁ ଲୋକେ ଆଧୁନିକ ସଭ୍ୟତାଠାରୁ ବହୁ ଦୂରରେ । ତେଣୁ କମ୍ୟୁନିଷ୍ଟ ଚିନ୍ତାଧାରା ଦୁର୍ବଳ ଯୁକ୍ତି ଗୁଡ଼ିକୁ ସେମାନେ ପ୍ରତ୍ୟାଖ୍ୟାନ କରିବା ଅବସ୍ଥାରେ ନଥିଲେ । ଆଦିବାସୀମାନେ ମୁଖ୍ୟତଃ ଅହିଂସ ହୋଇଥିଲେ ମଧ୍ୟ ନିଜର ବଞ୍ଚିରହିବା ପାଇଁ ହିଂସାର ଆଶ୍ରୟ ନେଉଥିଲେ, ପଶୁଶିକାର କରୁଥିଲେ, ଗୋରୁ କାଟୁଥିଲେ, ସଲପ ଗଛରୁ ଅନ୍ୟକେହି ମଦ ଚୋରାଇ ନେଉଥିଲେ ତାକୁ ଶରମାରି ଖଣ୍ଡିଆ କରିଦେଉଥିଲେ । ତେଣୁ କଟ୍ଟୁହନ ପାଇଁ ସେମାନେ ହିଂସାର ଦାସ ହୋଇଗଲେ ।

— ୦ —

# ଭୀମ ଆଗେ ହାରେ

ଜଣାଗଲା, ସତେ ଯେପରି ହିଂସାବାଦୀ ମାନଙ୍କର ବିଜୟ ହେଉଛି । ୧୯୬୮ରୁ ୧୯୭୦ ମସିହା ପର୍ଯ୍ୟନ୍ତ ଏମାନେ କୋରାପୁଟର ବିଭିନ୍ନ ଅଞ୍ଚଳରେ ହିଂସାତ୍ମକ କାଣ୍ଡ ଘଟାଇଲେ । କୁହାଗଲା ଯେଉଁମାନେ ଶୋଷଣ କରୁଛନ୍ତି, ସେମାନଙ୍କୁ ନିଶ୍ଚିହ୍ନ କରିବା ପାଇଁ ହିଂସାର ଆଶ୍ରୟ ନିଆଯାଉଛି । ଚଫକେଣ୍ଡା, ନନ୍ଦପୁର, ନାରାୟଣ ପାଟଣା, ରାୟଗଡ଼ା, ବିଷମ କଟକ, ରାମନାଗୁଡ଼ା, ଗୁଣୁପୁର, ଗୁଡ଼ାରି ଇତ୍ୟାଦି ଅଞ୍ଚଳରେ ଏମାନଙ୍କର କାର୍ଯ୍ୟକଳାପ ଜଣା ପଡ଼ିଲା । ଯେଉଁମାନେ ଶିକାର ହେଲେ ସେମାନେ ଶୋଷକ-ମାନଙ୍କ ତାଲିକାର ପ୍ରଥମ ପୃଷ୍ଠାରେ ନଥିଲେ, କହିବାକୁ ଗଲେ ମହାବଳ ବାଘ ଆଗରେ ସେମାନେ ବିଲେଇ ପରି ଥିଲେ, ସେମାନଙ୍କ ଶିକାର ଥିଲେ କୁଜି ଅସରପା, କଣା ମୂଷା ଆଉ ଛେଟିପାରା । ଗାଆଁର ଶ୍ରେଷ୍ଠ ଶ୍ରେଷ୍ଠ ବ୍ୟବସାୟୀମାନେ ରେହାଇ ହେଲେ । ଏକଥା ସତ୍ୟ ଯେ ସେମାନେ ଶୋଷକ ଶ୍ରେଣୀର, ମଣି ଓ ଛୁରଚୋର ମଧ୍ୟରେ କିଏ ଅଧିକ ଶୋଷକ, ତାହା ନିର୍ଣ୍ଣୟ କରିବା ଯେପରି କଷ୍ଟକର ଶ୍ରେଷ୍ଠ ବ୍ୟବସାୟୀ ଓ ବଡ଼ ବ୍ୟବସାୟୀଙ୍କ ଭିତରୁ କୋରାପୁଟରେ କିଏ ଅଧିକ ଶୋଷଣକାରୀ, ତାହା ସିଦ୍ଧାନ୍ତ କରିବା, ସେହିପରି କଷ୍ଟକର ।

ବିଶ୍ୱନାଥ କହନ୍ତି, "ଆମେ ନକ୍ସଲପନ୍ଥୀ ଓ ଅନ୍ୟ ଶୋଷଣ ବିରୋଧୀ ହିଂସାବାଦୀମାନଙ୍କର ଲକ୍ଷ୍ୟ ସଂପର୍କରେ ସହାନୁଭୂତିଶୀଳ ଥିଲୁ । ନକ୍ସଲ ପନ୍ଥୀମାନେ ଭ୍ରମାତ୍ମକ ହିଂସା ପନ୍ଥା ଅବଲମ୍ବନ କରୁଥିଲେ । ମଧ୍ୟ ଗରିବ ଲୋକଙ୍କ ପାଇଁ ସେମାନଙ୍କ ହୃଦୟରେ ଅନୁକମ୍ପା ଥିଲା, ଦାୟିତ୍ୱ ବୋଧ ଥିଲା, ସେମାନେ ଦସ୍ୟୁମାନଙ୍କ

ସମର୍ଥ୍ୟପୁଷ୍ଟ କରନ୍ତି । କିନ୍ତୁ ହିଂସାକାଣ୍ଡ ଭିଆଇବା ଅତ୍ୟନ୍ତ ନିନ୍ଦନୀୟ ଓ କ୍ଷତିକାରକ । ହିଂସାରୁ କେବେ ନ୍ୟାୟ କିମ୍ବା ଶାନ୍ତି ଜନ୍ମ ହେବ କି ? ଶୋଷଣକାରୀମାନେ ହିଂସାକୁ ନିମନ୍ତ୍ରଣ କରୁଥିଲେ, କିନ୍ତୁ କୌଣସି ବିବେକବାନ୍ ଓ ନ୍ୟାୟନୀତିରେ ବିଶ୍ୱାସ କରୁଥିବା ଲୋକ ହିଂସାକୁ ପନ୍ଥା ରୂପେ ଗ୍ରହଣ କରିପାରେ କି ? ଆମ୍ବ ଗଛରୁ ଆମ୍ବ ଫଳ ହୁଏ, ଲେମ୍ବୁ ଗଛରୁ ଲେମ୍ବୁ ଫଳ ହୁଏ, ହିଂସାର ମଞ୍ଜି ଥରେ ବୁଣା ହେଲେ ହିଂସାର ଗଛ ନଜଠି ଅନ୍ୟ କେଉଁଗଛ ହେବ, ଅନ୍ୟ କି ଫଳ ଫଳିବ ? ଯଦି ମାନବିକତାର ଭାବ ବେଗରେ ଜଣେ ହିଂସାକୁ ପନ୍ଥା ରୂପେ ଗ୍ରହଣ କରେ ଓ ତାକୁ ଶଲ୍ୟ ଚିକିତ୍ସକ ବା ସର୍ଜନର ଛୁରୀ ବୋଲି ଭାବେ ତାହା କ'ଣ ଠିକ୍ ହେବ ? ଯଦି ଜଣେ ଲୋକ ମାରାତ୍ମକ ରୋଗରେ ପଡ଼େ, ତାକୁ ହତ୍ୟାକଲେ କ'ଣ ସେ ସଂକ୍ରାମକ ରୋଗ ବନ୍ଦ ହୋଇଯିବ ?

ଯୁଦ୍ଧ କୌଶଳ ବା ଷ୍ଟ୍ରାଟେଜୀ ଦୃଷ୍ଟିରୁ ମଧ୍ୟ ହିଂସାକୁ ଗ୍ରହଣ କରାଯାଇ ନପାରେ । ରାଷ୍ଟ୍ର, ସରକାର, ରାଜା, ଶାସନ ଇତ୍ୟାଦି ଯେଉଁ ଅନୁଷ୍ଠାନ ପୃଥିବୀରେ ଯେଉଁ ସମୟରେ ସୃଷ୍ଟି ହୋଇଛି, ତାର ମୁଖ୍ୟ ଅସ୍ତ୍ର ହେଉଛି ହିଂସା । ଦୁର୍ବଳ ଉପରେ ସବଳର ହିଂସାତ୍ମକ ଅତ୍ୟାଚାରକୁ ପ୍ରତିରୋଧ କରିବାକୁ ରାଷ୍ଟ୍ର ହିଂସାତ୍ମକ ପନ୍ଥା ଗ୍ରହଣ କରେ । ସେଥିପାଇଁ ଖଣ୍ଡା ତରବାରି, ତୋପ କମାଣ, ବନ୍ଧୁକ, ପରମାଣୁ ଅସ୍ତ୍ର ଇତ୍ୟାଦି ସୃଷ୍ଟି ହୋଇଛି । କିନ୍ତୁ ରାଷ୍ଟ୍ରଶକ୍ତି ଜାଣିପାରେନା କେତେବେଳେ କେଉଁ ଦୁର୍ବଳ ଲୋକ ଅତ୍ୟାଚାରିତ ହେଉଛି । ତେଣୁ ବିଚାର ବିଭାଗ, ନ୍ୟାୟାଧୀଶ ପଦବୀ ସୃଷ୍ଟି ହୋଇଛି । ସେ ବିଚାର ବିଭାଗ ମାନବିକ ଦୃଷ୍ଟି କୋଣରୁ ସର୍ବଦା ନ୍ୟାୟ ଦେବେ ନାହିଁ, କାରଣ ଆଇନର ଶାସନ ରହିଥିବାରୁ ସେଠାରେ ଆଇନ ଅନୁଗାମୀ ଭାବ [illegible] ନାହିଁ

ତାହା ଦେଖିବା ବିପ୍ଳବୀଙ୍କର କର୍ତ୍ତବ୍ୟ । ସେ ଦୃଷ୍ଟିରୁ ହିଂସାବାଦୀ ମାନେ ଦୋଷୀ ବୋଲି ବିବେଚିତ ହେବେ, ଯେମାନଙ୍କର ମାନବିକତା ବୋଧ ସଂପର୍କରେ ବିପ୍ଳବୀ କହିବେ ଯେ ଆଇନକୁ ନିଜ ହାତକୁ ନେଇଯିବା ଉଚିତ ନୁହେଁ । ଶାସନକଳର ଦୃଷ୍ଟିଭଙ୍ଗୀ ମଧ୍ୟ ତଦ୍ରୂପ ହେବ । ତେଣୁ ପୋଲିସ୍ ହିଂସାର ମୁକାବିଲା କରିବାକୁ ଆସିବେ, ରାଷ୍ଟ୍ରଶକ୍ତି ବିରୁଦ୍ଧରେ ସଫଳତାର ସହ ହିଂସାତ୍ମକ, ଆନ୍ଦୋଳନ କରିବା ପାଇଁ ଯେଉଁ ପରିବେଶ ଆବଶ୍ୟକ ତାହା ଭାରତ ବର୍ଷରେ ସୃଷ୍ଟି ହୋଇପାରିବା ଅତ୍ୟନ୍ତ କଷ୍ଟକର । ପୋଲିସ୍ ହିଂସାକାଣ୍ଡ କରୁଥିବା ଲୋକଙ୍କୁ ନିଶ୍ଚିହ୍ନ କରିବାକୁ କିମ୍ବା ବିପ୍ଳବୀଙ୍କ ହାତରେ ସମର୍ପି ଦେବାକୁ ଚେଷ୍ଟା କରିବେ । ଯଦି ହିଂସାକାଣ୍ଡ କରୁଥିବା ଲୋକ ସହଜେ ଧରା ନପଡ଼ନ୍ତି, ସେମାନେ ଯେଉଁ ଅଞ୍ଚଳରେ କାର୍ଯ୍ୟକଳାପ ଚାଲୁ ରଖିଥିବେ କିମ୍ବା ରହୁଥିବେ ବୋଲି ପୋଲିସ୍ ସନ୍ଦେହ କରିବ ସେ ଅଞ୍ଚଳର ସାଧାରଣ ଲୋକ ପୋଲିସ୍ ଶକ୍ତିର ସନ୍ଦେହ ଚକ୍ଷୁରେ ରହିବା ସ୍ୱାଭାବିକ । ସାଧାରଣ ଲୋକେ ପୋଲିସ୍‌ର କୋପଦୃଷ୍ଟିରେ ପଡ଼ିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ହିଂସାବାଦୀମାନଙ୍କ ଠାରୁ ଅଲଗା ରହିବେ ଓ ଯେଉଁ ବିଶ୍ୱାସୀ ଲୋକେ ହିଂସାବାଦୀମାନଙ୍କ ସହ ରହିବେ ସେମାନଙ୍କୁ ଦମନ କରିବା ପୋଲିସ୍ ପକ୍ଷେ ସହଜ ହେବ । ତେଣୁ ଯୁଦ୍ଧ କୌଶଳ ଦୃଷ୍ଟିରୁ ମଧ୍ୟ ହିଂସାକୁ ଗ୍ରହଣ କରାଯାଇ ନପାରେ ।

ଅବଶ୍ୟ ଅନେକ ସ୍ଥାନରେ ଆମର ଆଦିବାସୀ ସହକର୍ମୀ-ମାନଙ୍କୁ ଶୋଷଣ ବିରୁଦ୍ଧରେ ବୁଝାଇ ହିଂସାକାଣ୍ଡର ବିରୋଧ ନକରିବାକୁ ହିଂସାବାଦୀ ମାନେ ପ୍ରବର୍ତ୍ତାଇ ପାରିଥିଲେ । ସେମାନଙ୍କ ସାହାଯ୍ୟରେ ସାଧାରଣ ଗ୍ରାମବାସୀଙ୍କ ନିକଟକୁ ଯାଇପାରିଥିଲେ ଓ ସେମାନଙ୍କ ବିଶ୍ୱାସ ଭାଜନ ହୋଇ ପାରିଥିଲେ । ଏହି ଆନ୍ଦୋଳନ

ଯେତେ ଗଣ୍ଡଗୋଳକୁ ଡେରି ମେଳଉଥିଲି ବୋଲି ପୋଲିସ ଖବର କରୁଥିଲେ ପ୍ରକୃତରେ ତାହା ସେତେ ଗମ୍ଭୀରକୁ ଯାଇନଥିଲା । ରାମନାଗୁଡ଼ା ପାଖରେ ତଡ଼ମୂଳ ଗାଆଁର ଧନବନ୍ତ ଶୁଣ୍ଡୀକୁ ହତ୍ୟା କରାଯିବାର କିଛିଦିନ ପରେ ମାଳତୀ ଚୌଧୁରୀଙ୍କୁ ଧରି ସେ ଗାଆଁକୁ ଯାଇଥିଲି । ଧନବନ୍ତ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଲୋକ ନୁହେଁ । ସେ ଶୋଷକ ମନୋବୃତ୍ତିର ହୋଇଥିଲେ ମଧ୍ୟ ତା’ ଘରେ ସେତେ ସମୟର ଦରଦାମ ଅନୁସାରେ ହଜାର ଟଙ୍କାରୁ ଅଧିକ ସମ୍ପତ୍ତି ନଥିଲା । ଆଦିବାସୀମାନଙ୍କୁ ନିଜ ପକ୍ଷକୁ ନେବାକୁ ଓ ଶୋଷକମାନଙ୍କୁ ଭୟଭୀତ କରିବାକୁ ବୋଧହୁଏ ଏ କାଣ୍ଡ ହୋଇଥିଲା । ତାକୁ ହତ୍ୟା କରାଯିବା ଠିକ୍ ହୋଇନାହିଁ । ମୋର ମତ ଶୋଷଣକାରୀ ଶକ୍ତିକୁ ଲୋପ କରାଯିବା ଉଚିତ । ଏହା କଷ୍ଟସାଧ୍ୟ, ନିଜ ଜୀବନରେ ଏହା ମୁଁ କେତେଦୂର ଅଭ୍ୟାସ କରିଛି ତାହା ପରୀକ୍ଷା କରିପାରି ନାହିଁ । ଉପର ଶାସନ ସ୍ଥାୟୀ ନୁହେଁ । ମାଳତୀ ଦେବୀ ଓ ତାଙ୍କର ଆମେ କେତେଜଣ ସମର୍ଥକ ସମସ୍ତ ପ୍ରକାର ଆତଙ୍କବାଦର ବିରୋଧ କଲୁ । ପୋଲିସ୍ ହିଂସାବାଦୀ ମାନଙ୍କ ସମ୍ପର୍କରେ ଖବର ଆଦାୟ କରିବା ପାଇଁ ଅନେକ ସମୟରେ ଆଦିବାସୀମାନଙ୍କ ପ୍ରତି ପାଶବିକ ଅତ୍ୟାଚାର କଲେ । ଆମେ ଏହାର ମଧ୍ୟ ବିରୋଧ କରିଥିଲୁ । ସାଧାରଣ ଆଦିବାସୀ ଲୋକର ମନୋବଳ ଅତୁଟ ରଖିବାକୁ ମାଳତୀ ଦେବୀ ବୁଲିବୁଲି ଅଞ୍ଚଳ ଗସ୍ତକଲେ । ମୁଁ ତାଙ୍କ ସହ ରହିଲି । ହିଂସାବାଦୀମାନଙ୍କର ଆନ୍ଦୋଳନ ଓ ସରକାରଙ୍କ ପ୍ରଥମ ପ୍ରତିକ୍ରିୟା ଦେଖିବା ପରେ ମୁଁ ଅନୁଶୋଚନା କଲି । ପୂର୍ବରୁ କମ୍ୟୁନିଷ୍ଟ ନେତାମାନଙ୍କ ସହ ମୋର ଯେତେ ଆଲୋଚନା ହୋଇଥିଲା ତାହା ମୁଖ୍ୟତ ଶୋଷଣର ସ୍ବରୂପ ସମ୍ପର୍କରେ । ଆଦିବାସୀମାନଙ୍କୁ କିପରି ଶୋଷଣ କରାଯାଉଛି ତାହା ମୁଖ୍ୟ ବିଷୟବସ୍ତୁ ଥାଏ । ସେମାନଙ୍କୁ ହିଂସା ଢଙ୍ଗରେ କହି-

ନାହିଁ । ସେଥିପାଇ ମୁଁ ଅନୁଶୋଚନା କଲି । ସିଧାସଳଖ ସେମାନଙ୍କୁ ମୋର ମତ ଜଣାଇବା ଉଚିତ ଥିଲା । କିନ୍ତୁ ସେମାନେ ମାର୍କସ୍‌ବାଦର ଏପରି ଅର୍ଥ କଲେ ଓ ନିଜ ବକ୍ତୃତାରେ ସେହି ସମସ୍ତ ପାଇ ଏପରି ବୁଝିଥିଲେ ଯେ ତାଙ୍କୁ ଅହିଂସା ସମ୍ପର୍କରେ କହିଥିଲେ କୌଣସି ପରିବର୍ତ୍ତନ ହୋଇନଥାନ୍ତା । ପରନ୍ତ ସେତେବେଳେ କମ୍ୟୁନିଷ୍ଟମାନଙ୍କ ସପକ୍ଷରେ ବହୁଥିଲା । ପ୍ରଥମ ସରକାରୀ ପ୍ରତିକ୍ରିୟା ଜନସାଧାରଣଙ୍କ ପକ୍ଷରେ ସ୍ୱାଗତ-ଯୋଗ୍ୟ ହୋଇ ନାହିଁ । ଲୋକେ କାହିଁକି ହିଂସାକୁ ସମର୍ଥନ କରୁଛନ୍ତି ତାହା ବୁଝିବାକୁ କେହି ଚେଷ୍ଟା କଲେ ନାହିଁ । ମାଲିକ ହେବାକୁ ଓ ଆମ୍ଭମାନଙ୍କୁ ସରକାର, ଜନସାଧାରଣ ଓ କମ୍ୟୁନିଷ୍ଟମାନେ ନୈତିକତାର କାଠଗଡାରେ ଛିଡ଼ା କରାଇ ଦେଲେ । ସରକାର ଯଦି ଶୋଷଣ ବିରୁଦ୍ଧରେ ଦୃଢ଼ ପଦକ୍ଷେପ ନେଇଥାଆନ୍ତେ ହିଂସାକାଣ୍ଡ ହୋଇପାରି ନଥାନ୍ତା ।

ତେବେ ତେର ବର୍ଷ ପରେ ସରକାର କେତେକ ଦୃଢ଼ ପଦକ୍ଷେପ ନେବାକୁ ଚେଷ୍ଟା କଲେ । ଭୂମିହୀନ ମାନଙ୍କୁ ଜମି ଦେବା କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଗଲା । ଯେଉଁମାନେ ଶୋଷକମାନଙ୍କ ଚକ୍ରାନ୍ତରେ ନିଜ ଜମି ହରାଇଥିଲେ, ସେମାନଙ୍କୁ ଜମି ଫେରାଇ ଦେବା କାର୍ଯ୍ୟକ୍ରମ ଜୋର୍‌ସୋର୍‌ରେ ଆରମ୍ଭ ହେଲା । ସମବାୟ ଋଣ ଓ ଅନ୍ୟାନ୍ୟ ସରକାରୀ ଋଣ ଅଧିକ ପରିମାଣରେ ଦେବାପାଇଁ ଟଙ୍କା ଆସିଲା । ଗୁଣୁପୁର ଓ ପାରଳା ଖେମୁଣ୍ଡିରେ 'Tribal Dereleprmant Agency ନାମକ ସଂସ୍ଥା ଆଦିବାସୀ ଉନ୍ନୟନ 'କାର୍ଯ୍ୟକ୍ରମ ହାତକୁ' ନେଲେ ।

ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାରେ କମ୍ୟୁନିଷ୍ଟ ମାନେ କେତେକାଂଶରେ ସଫଳ ହେଲେ । ମୁଁ ଠିକ୍ ସମୟରେ ନିଜ ମତ

ସରକାର, ଜନସାଧାରଣ ବା କମ୍ୟୁନିଷ୍ଟଙ୍କ ସମକ୍ଷରେ ଦୃଢ଼ଭାବେ ଉପସ୍ଥାପିତ କରିପାରିଲା ନାହିଁ ।”

—o—

# ମଧ୍ୟାହ୍ନ ପରେ

୧୯୬୭ ମସିହାରେ ବିନୋବାଜୀ, ଓଡ଼ିଶାରେ ଗସ୍ତ କରିବେ ଓ ଫୁଲବାଣୀ ଜିଲ୍ଲାରେ ସର୍ବୋଦୟର ବାର୍ତ୍ତା ପ୍ରଚାର କରିବେ ବୋଲି ଆପାତତଃ ସ୍ଥିର ହୋଇଥିଲା । ସର୍ବୋଦୟ ଭାବନାରେ ପ୍ରଧାନ ଜନସାଧାରଣଙ୍କ ନେତୃତ୍ୱ ନେଇଥିବା ଲୋକ ଫୁଲବାଣୀ ଜିଲ୍ଲାରେ ସେତେବେଳେ ଖୁବ୍ କମ୍ ଥିଲେ । ସ୍ଥିର ହେଲା ବିଶ୍ୱନାଥ ସେହି ଅଞ୍ଚଳରେ କାମ କରିବେ ଓ ସମାନ ଚିନ୍ତାଧାରାର ଲୋକଙ୍କୁ ଏକଜୁଟ କରି ଶୋଷଣ ବିରୋଧୀ ସଂଗ୍ରାମ ଚାଲୁ ରଖିବା ସଙ୍ଗେ ସଙ୍ଗେ ଗଠନମୂଳକ କାର୍ଯ୍ୟ କରିବେ । ତେଣୁ ୧୯୬୫ ମସିହାର ଦ୍ୱିତୀୟାର୍ଦ୍ଧରେ ବିଶ୍ୱନାଥ କୋଟଗଡ଼, ବେଲଘର, ବାଲିଗୁଡ଼ା, ଜି. ଉଦୟଗିରି ଓ ଫୁଲବାଣୀ ଅଞ୍ଚଳର ବିଭିନ୍ନ ଗ୍ରାମକୁ ଯିବା-ଆସିବା କଲେ । ରାୟଗଡ଼ା ଗୁଣୁପୁର ଅଞ୍ଚଳରେ ଅହିଂସକ ଆନ୍ଦୋଳନ ଚାଲୁନାହିଁ, ହିଂସା ସପକ୍ଷରେ ସ୍ୱର ଉଠୁଛି, ଆମର ଗୋଟିଏ ଦାନ୍ତ ଭାଙ୍ଗିଦେଲେ ଆମେ ତୁମର ଗୋଟିଏ ଦାନ୍ତ ଭାଙ୍ଗିଦେବୁ, ଆମର ଗୋଟିଏ ଆଖି ଫୁଟାଇ ଦେଲେ ଆମେ ତୁମର ଗୋଟିଏ ଆଖି ଫୁଟାଇ ଦେବୁ । ତୁମେ ଆମ ସମ୍ପତ୍ତି ଲୁଟିନେଇଛ, ଆମେ ଜବରଦସ୍ତ ତୁମ ସମ୍ପତ୍ତି ଜବତ ନେବୁ । ସାଧାରଣ ଲୋକେ ବୁଝିଲେଣି ଆମକୁ ଭଣ୍ଡି ଦେବାକୁ ବହୁଲୋକ, ଆମ ସପକ୍ଷରେ, ଆମ ସ୍ୱାର୍ଥପାଇଁ ଲଢ଼େଇ କରିବାକୁ କମ୍ ଲୋକ, ତେଣୁ ଆମେ ଧୈର୍ଯ୍ୟର ସହ ଅହିଂସାକୁ ପ୍ରୟୋଗ କରି ପାରିବୁ ନାହିଁ, ଏତିକି ବେଳେ ବିଶ୍ୱନାଥ ଫୁଲବାଣୀ ଜିଲ୍ଲାରେ ଗସ୍ତ କରୁଛନ୍ତି । ହିଁକ ଭଗ୍ନ ହୃଦୟରେ ?? ବୟସ ବଢ଼ିବା ସଙ୍ଗେ ସଙ୍ଗେ କାର୍ଯ୍ୟ କରିବାର ଶକ୍ତି କମିଗଲା, ତେଣୁ ସଂଗ୍ରାମର ନେତୃତ୍ୱ ...ବାକୁ

ଅସମର୍ଥ ହୋଇ ସଂସ୍କାରମୂଳକ କାମରେ ସମୟ ଦେଲେ ? ଯୁବ ନେତୃତ୍ୱକୁ ରାସ୍ତା ଛାଡ଼ିଦେଲେ ? ଠକ୍କରବାପା ଆଶ୍ରମ, ଡ଼େନିସ୍ ମିଶନ୍, ଜର୍ମାନ୍ ମିଶନ୍ ପରି ଗତର ସର୍ବୋଦୟ କର୍ମୀ, ହରେନ୍ଦ୍ର ବକ୍ସିପାତ୍ର ଓ ନାଗଭୂଷଣ ପଟ୍ଟନାୟକ ଇତ୍ୟାଦି କୋରାପୁଟ ଆଦିବାସୀ ମାନଙ୍କ ଭିତରେ ରହି କାମ କରୁଛନ୍ତି, ଦୂରରେ ରହି ତାହା ଲକ୍ଷ୍ୟ କରିବାକୁ ଫୁଲବାଣୀ ଜିଲ୍ଲାରେ ସେ ଅଧିକ ସମୟ କଟାଇଲେ ? ଫୁଲବାଣୀରେ ସେହିପରି ଶୋଷଣ ଚାଲିଛି, ଲୋକେ ଅବହେଳିତ ଅଛନ୍ତି. କୋରାପୁଟରେ ତ ଯୁବଶକ୍ତି ଦାୟିତ୍ୱ ନେବାପାଇଁ ପ୍ରସ୍ତୁତ ହୋଇଗଲେଣି, ତେଣୁ କାର୍ଯ୍ୟକ୍ଷେତ୍ର ବଦଳାଇବାକୁ ହେବ ?

ବିଶ୍ୱନାଥଙ୍କୁ ପଚାରିଲେ ଏତିକି ମାତ୍ର ସଂକ୍ଷିପ୍ତ ଉତ୍ତର ମିଳେ "୧୯୫୫ ମସିହା ପର୍ଯ୍ୟନ୍ତ କାମରୁ ଯେଉଁ ଶାନ୍ତି ମିଳୁଥିଲା ତାହା କ୍ରମେ କମିଗଲା, ମୁଁ କେବେ ଜାଣିଶୁଣି ଅବହେଳା କରି-ନାହିଁ, ସ୍ୱାଧୀନତା ଆନ୍ଦୋଳନ ଓ ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କେତେବର୍ଷରେ ଜନସାଧାରଣଙ୍କ ଆଗ୍ରହ ସଂଗ୍ରାମରେ ବିଜୟ ହାସଲ କରିବାପାଇଁ ମୋତେ ଖୁବ୍ ସାହାଯ୍ୟ କରିଥିଲେ । ପରେ ଅନେକ କଥା ମୁଁ ଭୁଲ୍ ବୋଲି ଜାଣି ମଧ୍ୟ ସେଥିରୁ ନିବୃତ୍ତ ରହି-ବାକୁ ଲୋକମାନଙ୍କୁ କହିପାରିନାହିଁ ।"

ବିଶ୍ୱନାଥ କୋରାପୁଟ ସହିତ ଏବେମଧ୍ୟ ଘନିଷ୍ଠ ସମ୍ପର୍କ ରଖିଛନ୍ତି । ମାତିଲିଠାରୁ ମଚ୍ଛକୁଣ୍ଡ ଯାଏ, ନବରଙ୍ଗପୁରରୁ ଗୁଣୁପୁର ଯାଏ ସେ ଏବେ ବି ଅବହେଳିତ ଆଦିବାସୀଙ୍କ ଭିତରେ ଦେଖା-ଯାଆନ୍ତି । ସେହିମାନଙ୍କ ଉନ୍ନତି ପାଇଁ ଯତ୍ନ କଣ୍ଠିତ କରନ୍ତି, ଅନେକ ଲୋକ ତାଙ୍କୁ ଜୀବନଯାତ୍ରା ପାଇଁ ଆବଶ୍ୟକୀୟ ସାମାନ୍ୟ ଅର୍ଥ ଦାନ କରନ୍ତି । ତାଙ୍କର ଆବଶ୍ୟକତା ଖୁବ୍ କମ୍ । ନିଜସ୍ୱ ସମ୍ପତ୍ତି

କହିଲେ କେତେକ କାଗଜପତ୍ର ଓ ସାମାନ୍ୟ କନ୍ଥା ଲୁଗାଚେଟା । କାନ୍ଧରେ ଝୁଲମୁଣିଟିଏ ସବୁବେଳେ ଝୁଲୁଥାଏ । ଏବେବି ପାହାଡ ପର୍ବତ ଖୋଲରେ ଏକାଦିକ୍ରମେ ୧୫ ମାଇଲ ୨୦ ମାଇଲ ଚାଲି ଚାଲି ଯାଆନ୍ତି । ଯିଏ ଯାହା ଦାନ କରନ୍ତି ସେହି ଝୁଲିରେ ପଡ଼େ, ଯାହାକୁ ଯାହା ଦେବାକୁ ପଡେ ସେହି ଝୁଲିରୁ ଦିଆଯାଏ । ସେ ମୁଖ୍ୟତଃ କେଗପ୍ରଟରୁ ଆଧାର ସଂଗ୍ରହ କରନ୍ତି । ଲୋକେ ଉପକୃତ ହେଉଛନ୍ତି ଓ ହୋଇଛନ୍ତି, ତେଣୁ ଦାନପାତ୍ର ଶୂନ୍ୟ ହୁଏନା ।

ଏବେ ତାଙ୍କର ବାଲିଗୁଡ଼ା ଠିକଣାରେ ଚିଠିଯାଏ । ବାଲିଗୁଡ଼ା ସବ୍‌ଡିଭିଜନ୍ ଓଡିଶାର ପଛୁଆ ଅଞ୍ଚଳ ମଧ୍ୟରୁ ଅନ୍ୟତମ । ଫୁଲବାଣୀ ଜିଲ୍ଲାରେ ରେଳପଥ ନାହିଁ । ମଟର ଯାଉଥିବା ରାସ୍ତା କମ୍ । କୌଣସି ମଧ୍ୟମ ଧରଣର ଶିଳ୍ପ ମଧ୍ୟ ନାହିଁ । ୧୯୬୫ ମସିହାରେ ଶତକଡା ଜଣେ ଲୋକ ଇଲେକ୍‌ଟ୍ରିକ୍ ଆଲୁଅ ଦେଖିଥିଲେ । ୧୯୮୨ ମସିହାରେ ବେଲଘର ଥାନାର କୌଣସି ଅଞ୍ଚଳରେ ବସ୍ ଗଲେନାହିଁ । ଲୋକେ କୋରାପୁଟ ଜିଲ୍ଲାର ଅମ୍ବାଦଳା କିମ୍ବା ଫୁଲବାଣୀର ଭୁମୃଡ଼ିବନ୍ଧରୁ ଚାଲି ଚାଲି ବେଲଘର ଯିବାକୁ ପଡେ । କୋଟଗଡ଼ ଓ ବେଲଘର ଥାନାର ଲୋକେ ସବୁଠାରୁ ଅବହେଳିତ । ଏଠାରେ ପୋଲିସ ଓ ରାଜସ୍ୱ ବିଭାଗ କର୍ମଚାରୀମାନେ ସାଧାରଣ ଲୋକର ଅଭିଯୋଗ ବୁଝିପାରନ୍ତି ନାହିଁ ବୋଲି ଅଭିଯୋଗ ହୁଏ । ଲୋକେ ଚଳିବାପାଇଁ ଜଙ୍ଗଲ ଉପରେ ନିର୍ଭର କରନ୍ତି, ସେମାନେ ଶିକାର କରନ୍ତି, ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରିବା ସେମାନଙ୍କର ଜନ୍ମଗତ ଅଧିକାର, କିନ୍ତୁ ଜଙ୍ଗଲ ଆଇନର ରକ୍ଷକମାନେ ତାହା ସ୍ୱୀକାର କରନ୍ତି ନାହିଁ । ତାଙ୍କ ନାମରେ କେସ୍ କରନ୍ତି । ପୋଲିସ୍ ଓ ଜଙ୍ଗଲ ବିଭାଗ କର୍ମଚାରୀଙ୍କ ଏଠାକାର ଆଦିବାସୀ ଲୋକ ଶୋଷଣ ଭୟ କରି ଶଙ୍କିତ

ଜଙ୍ଗଲ ବାହାରେ ଯେଉଁ ଚାଷ ଜମି ଅଛି ସେଠାରେ ବଣୁଆ ଜୀବଜନ୍ତୁଙ୍କ ଉତ୍ପାତ ଯେତେବେଳେ, ତା'ଠାରୁ ଅଧିକ ଉତ୍ପାତ ଏ ତଥାକଥିତ ସଭ୍ୟ ଚତୁର ମଣିଷର । ଆଫ୍ରିକାର ସମ୍ପୂର୍ଣ୍ଣ ରହିଥିବା ତୃଣଭୂମି ଓ ଜଙ୍ଗଲମାନଙ୍କରେ ଯେପରି କେତେକ ତୃଣଭୋଜୀ ପ୍ରାଣୀ ଥାଆନ୍ତି ଓ ବିଭିନ୍ନ ପ୍ରକାର ମାଂସାଶୀ ଜୀବ ଯାହାକୁ ଯିଏ ପାରିଲା ତାକୁ ଶିକାର କରେ, ଗୋଟିଏ ମାଂସାଶୀ ଜୀବକୁ ଆଉ ଗୋଟିଏ ବଡ଼ ଜୀବ ଶିକାର କରେ, ସେହିପରି କୋରାପୁଟ, ଗଞ୍ଜାମ, ଫୁଲବାଣୀ ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ଼ ଜଙ୍ଗଲର କଥା । ଯାହାର ନଖ ଓ ଦାନ୍ତର ଜୋର ଯେତେ, ସେହି ଅନୁସାରେ ଶିକାର । ଶୋଷକର ଜାତି ନାହିଁ, ଧର୍ମ ନାହିଁ, ଲିଙ୍ଗ ନାହିଁ, ବର୍ଣ୍ଣ ନାହିଁ । ସେ କେବଳ ଦେଖେ କାହା କାନ୍ଧରେ ବସି ତା'ର ରକ୍ତ ଖାଇପାରିବ, ଯାହାର ରକ୍ତମାଂସ ଭୋଜ ହେବ ତା'ର ସିଙ୍ଗ ଅବା ଖୁରା ଯେପରି ଖାଦକକୁ ଆଘାତ ନ କରିପାରେ । ଧନୀ ଅଦିବାସୀ ଗରିବ ଆଦିବାସୀକୁ ଠକିବାକୁ ଚେଷ୍ଟା କରେ, ଧନୀ ଆଦିବାସୀକୁ ଡମ୍ବ ଓ ପାଣ ଜାତିର ଲୋକେ କୋରାପୁଟ ଫୁଲବାଣୀରେ ଠକିବାକୁ ଚେଷ୍ଟା କରନ୍ତି । ଏହି ଆଦିବାସୀ ହରିଜନଙ୍କୁ କୁମୁଟି ଓ ଶୁଣ୍ଡି ଠକିବାକୁ ଚେଷ୍ଟା କରନ୍ତି । ସାହୁକାର ଧନୀ ଦରିଦ୍ର ସବୁ ଆଦିବାସୀଙ୍କୁ ଆଗତୁରା ପଇସା ଦେଇ ରଖନ୍ତି ଫସଲ କିଣିବା ପାଇଁ । ମଣିଷର ରକ୍ତର ଝାଳ ବାହାରିଲେ ପାହାଡ଼ିଆ ଜମିରେ ଫସଲ ହୁଏ, ସେ ଫସଲ ଅଳ୍ପ ପଇସା ଦେଇ ସାହୁକାର ନେଇଯାଏ, ପଇସା ଯାଏ ଶୁଣ୍ଡିର ମଦଭାଟିକୁ, ଝାଳ ନିଗିଡ଼ ମାଟିରେ ପଡ଼େ, ଆଦିବାସୀର ରକ୍ତ ରହିଯାଏ ଫସଲ ଭିତରେ, ହଳଦୀ, କାନ୍ଦୁଲ, ଚେନ୍ନୁନି, ଝାଡ଼ୁ, ଅଳସୀ, ମାଣ୍ଡିଆ, ଧାନ, ଧୂଆଁପତ୍ର ଆଉ ମହୁଲ

ଭିତରେ । ସେ ସାହୁକାରଙ୍କୁ ଅସାଧୁ ସରକାରୀ କର୍ମଚାରୀ ଲୁଟି ନେବାକୁ ଚେଷ୍ଟା କରେ, "ଆଁ, ଆମେ ଥାଉଁ ଥାଉଁ ତୁ ଏ ଲୋକ-ଗୁଡ଼ାଙ୍କୁ ଠକି ନେଇଯିବୁ ।" ତା' ଅର୍ଥ ନୁହେଁ "ଆମେ ଏ ଲୋକଗୁଡ଼ାଙ୍କୁ ଠକିବାକୁ ଜନ୍ମ ହୋଇଛୁ । ଆମ ପାଖରେ ରାଜଶକ୍ତି, ସବୁଠାରୁ ବେଶୀ ବଳ, ତେଣୁ ଯଦି ତୁମେ ଭୁଲରେ ନିରୀହ ଲୋକଙ୍କୁ ଠକି ନେଉଛ, ତେବେ ସେହି ଲୁଟି ସମ୍ପତ୍ତିକୁ ମହାପ୍ରସାଦ ପରି ବାଣ୍ଟି ଖାଇବା କଥା । ସମସ୍ତ ଶୋଷିତ ଶ୍ରେଣୀର ସମ୍ପତ୍ତି ଶୋଷକ କୋଠ ସମ୍ପତ୍ତି ।"

ଏହି ସାଂସ୍କୃତିକ ବାତାବରଣରେ ୫୦ ବର୍ଷ ବୟସରେ ବିଶ୍ୱନାଥ କାମ ଆରମ୍ଭ କଲେ । ବେଲ ଘରରେ ନବଜୀବନ ମଣ୍ଡଳର କେନ୍ଦ୍ର ଖୋଲାଗଲା । ୧୯୭୦ ମସିହା ବେଳକୁ ବୁଲୁଁବାରୁ, ରଙ୍ଗାପାରୁ ଓ ଡଙ୍ଗପି ଏହି ୩ଟି ଗାଆଁରେ କାମ ଚାଲୁଥାଏ । ରଙ୍ଗାପାରୁରେ କୁଷ୍ଠରୋଗୀ ମାନଙ୍କ ଚିକିତ୍ସା ଓ ସେବା ଶୁଶ୍ରୂଷା କରିବା ପାଇଁ କର୍ମୀ ରହିଲେ । ଗାଆଁ ଲୋକମାନଙ୍କର ନୈତିକ ଓ ନାଗରିକ ଅଧିକାର ସମ୍ପର୍କରେ ସଚେତନ କରିବାପାଇଁ କର୍ମୀମାନେ ବୁଝାଇଲେ । ତା'ଛଡ଼ା ଗାଆଁ ଶିଶୁମାନଙ୍କର ଶିକ୍ଷା ଓ ସ୍ୱାସ୍ଥ୍ୟ ଦିଗରେ କାମ ହେଲା । କୁସଂସ୍କାରରୁ ମୁକ୍ତ କରିବାପାଇଁ ଗ୍ରାମବାସୀଙ୍କୁ ବିଶ୍ୱନାଥ ଶିକ୍ଷା ଦେଲେ । ନିର୍ଭୟଭାବେ ନିଜର ମତ ପ୍ରକାଶ କରିବାପାଇଁ ସେମାନଙ୍କୁ କହିଲେ । କେତେକ ଆଦିବାସୀ ଲୋକଙ୍କୁ ସଚେତନ କରାଇ କର୍ମୀଭାବେ ନିଯୁକ୍ତ କଲେ । ଧାରାଙ୍ଗଡ଼ ଓ ବାଲିଗୁଡ଼ା ଅଞ୍ଚଳରେ ଖଦିକାମ ଆରମ୍ଭ ହେଲା । ଉତ୍କଳ ଖଦିମଣ୍ଡଳ ଏ କାମ ହାତକୁ ନେଇଥିଲେ, କିନ୍ତୁ ନିଷ୍ଠାପର କର୍ମୀ ଅଭାବରୁ କାମ ମଉଳିଗଲା ।

ଲୋକଙ୍କୁ ଶୋଷଣ ମୁକ୍ତ ଓ ସୁସଭ୍ୟ କରିବା ସଂପର୍କରେ ବିଶ୍ୱନାଥଙ୍କ ଅନୁଭୂତିରୁ କହନ୍ତି "ଯେଉଁ ଶ୍ରେଣୀ ପାଇଁ ଆମେ କାମ କଲୁ, ସେହି ଶ୍ରେଣୀ ମଧ୍ୟରୁ କେତେକ ଆଗୁଆ ଚିନ୍ତାଧାରାର ଲୋକଙ୍କୁ ସମନା ଧାଡ଼ିକୁ ଆଣିବା ଆମର ଅନ୍ୟତମ ଲକ୍ଷ୍ୟ ରହିଲା । ଆମେ ପ୍ରଥମେ ଭାବୁଥିଲୁ, ଏହି ଆଗୁଆ ଲୋକେ ନିଜେ ଶୋଷଣରେ ସ୍ୱୟଂରେ କଷ୍ଟ ପାଇଥିବାରୁ ଲଢ଼େଇ ବେଳେ ନିସ୍ତାର ସହ କାମ କରିବେ । ସାଧାରଣ ଜୀବନ ଲଂଗଳ ସହ ନିଜକୁ ସାମିଲ କରିବେ । କିନ୍ତୁ ସେ ଧାରଣା ଠିକ୍ ବୋଲି ପ୍ରମାଣିତ ହେଲା ନାହିଁ । ଦଳିତ ଶ୍ରେଣୀ ମଧ୍ୟରୁ ଯେଉଁମାନଙ୍କୁ ଶିକ୍ଷାର ସୁଯୋଗ ମିଳିଲା, ଚାକିରିର ସୁଯୋଗ ମିଳିଲା, ସେମାନେ ନିଜ ଶ୍ରେଣୀରୁ ଅଲଗା ହୋଇ ଯିବାକୁ ଇଚ୍ଛା କଲେ । ସେମାନେ ନିଜ ଶ୍ରେଣୀର ଲୋକଙ୍କ ଠାରୁ ଅଧିକ, ଏହା ପ୍ରମାଣ କରିବାକୁ ବ୍ୟାକୁଳ । ଅନେକ ସମୟରେ ଦଳିତ ଲୋକେ ଠକାମିରେ ପଡ଼ିଲେ କିମ୍ବା ହଇରାଣରେ ପଡ଼ିଲେ ଏହି ଆଗୁଆ ଲୋକେ ଦୃଢ଼ ପ୍ରତିବାଦ କରୁ ନାହାନ୍ତି । ବୋଧହୁଏ ସେମାନେ ଭାବନ୍ତି ଆମ ପ୍ରତିବାଦକୁ କେହି ନଜର ଦେବେ ନାହିଁ ଅବା ପ୍ରତିବାଦ କଲେ ଆମେ ତଥା କଥିତ ସଭ୍ୟ ସମାଜରୁ ଅଲଗା ହୋଇଯିବୁ । ଅବଶ୍ୟ ସାଧାରଣଜୀବନ ନ୍ୟାୟ ପାଇଁ କଠୋର ସଂଗ୍ରାମରେ ବିଶ୍ୱାସ କରୁଥିବା କେତେଜଣ ଆଦିବାସୀ କର୍ମୀଙ୍କ ସହ କାମ କରିବାର ସୁଯୋଗ ମୋର ହୋଇଛି ।

ତଥା କଥିତ ସଭ୍ୟ ଲୋକ ଯେଉଁ ଜିନିଷ ଭୋଗ କରି, ଛାଡ଼ିବା ଅବସ୍ଥାରେ ରହିଲେଣି, ତାହା ସେମାନେ ଭୋଗ କରିବାକୁ ଚାହାନ୍ତି, ଛାପା ଶାଢ଼ୀ, ଟେରିଲିନ୍ ଓ ଅନ୍ୟାନ୍ୟ କୃତ୍ରିମ ତନ୍ତୁର ଲୁଗା ପ୍ରତି ସେମାନଙ୍କର ମୋହ ଆସେ, ଧୋବ ଧାଉଳିଆ

ଲୋକଙ୍କ ସହ ଘୋଡ଼ା ଦୌଡ଼ରେ ଯୋଗ ଦେବାକୁ ସେମାନଙ୍କର ଅସୀମ ଆଗ୍ରହ ।

କିନ୍ତୁ ଏସବୁରେ ବିଚିତ୍ରତା କିଛି ନାହିଁ । ଇଂରାଜୀ ଶିକ୍ଷା ଓ ପାଶ୍ଚାତ୍ୟ ସଂସ୍କୃତିର ମୋହ ଯେବେ ସମସ୍ତଙ୍କୁ ଘାରୁଛି, ସେମାନଙ୍କୁ ଘାରିଲେ କ୍ଷତି କଣ ? କୌଣସି ରୂଢ଼ିବାଦୀ ଶିକ୍ଷାରେ ମୁଁ ବିଶ୍ୱାସ କରେ ନାହିଁ । ଆମ ଦେଶର ସବୁଠାରୁ ତଳେ ଥିବା ଲୋକ ଜାଣୁ ଭାରତୀୟ ସଂସ୍କୃତିରେ କି ମହତ୍ତ୍ୱ ଓ କୁସଂସ୍କାର ରହିଛି, ପାଶ୍ଚାତ୍ୟ ସଂସ୍କୃତିରେ କି ପ୍ରକାର ବୈଜ୍ଞାନିକ ଦୃଷ୍ଟି କୋଣ ଓ ବସ୍ତୁବାଦୀ ଚିନ୍ତାଧାରା ରହିଛି । ଏ ଦୁଇଟି ଜିନିଷ ଜାଣିଲା ପରେ ସେ ସ୍ୱତନ୍ତ୍ର ବିଜ୍ଞାନ ସମ୍ମତ ମାନବବାଦ ଗ୍ରହଣ କରିବ । ସତ୍ୟ କ'ଣ ମିଥ୍ୟା କ'ଣ ଏହା ନିଜେ ଅନୁଭବ କରିବା ଅଧିକାର କ'ଣ ଆଦିବାସୀର ନାହିଁ ? ସେ ଜାଣୁଛି "ଆମ ପାଇଁ ଏ ଭୋଗ ସାମଗ୍ରୀ ଗୁଡ଼ିକ ମନା ନାହିଁ କି ?" ବୈଷୟିକ ଶିକ୍ଷା ଯେବେ ପ୍ରଚଳନ ହୁଏ, ତେବେ ସବୁ ସ୍ତରରେ ଏହା କାର୍ଯ୍ୟକାରୀ ହେଉ, କେବଳ ଆଦିବାସୀ ପିଲାଏ ଧନ୍ଦାମୂଳକ ଶିକ୍ଷା ନପାଆନ୍ତୁ । ସ୍ୱାଧୀନତା ପ୍ରାପ୍ତି ପରେ ବୁନିଆଦି ଶିକ୍ଷା ପଦ୍ଧତିର ପରିକଳ୍ପନା ଓ ସୀମିତ ପ୍ରୟୋଗ ହୋଇଥିଲା ତାହାର ବିଫଳ ହେଲା । ତେଣୁ ବର୍ତ୍ତମାନ ଆଦିବାସୀ ହରିଜନମାନଙ୍କ ପାଇଁ ଉଦ୍ଦିଷ୍ଟ ବିଦ୍ୟାଳୟରେ ଯେଉଁ-ପ୍ରକାର ଆଧୁନିକ ଶିକ୍ଷା ଦିଆଯାଉଛି ତାହାକୁ ବିରୋଧ କରିବା ଉଚିତ ନୁହେଁ । ଯଦି ବିରୋଧ ହେବ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ଶିକ୍ଷାର ସଂସ୍କାର ପାଇଁ ଚେଷ୍ଟା ହେଉ ।

ସରକାର ଅବଶ୍ୟ ସବୁଠାରୁ ବେଶୀ ଆଦିବାସୀ ହରିଜନଙ୍କ ପାଖେ ଠିକ୍ ଭାବେ ପହଞ୍ଚି ପାରୁ ନାହାନ୍ତି । ଆଶ୍ରମ ସ୍କୁଲରେ ବା ଅନ୍ୟ ସ୍କୁଲ କଲେଜରେ ପଢ଼ୁଥିବା ଆଦିବାସୀ ହରିଜନ ପିଲା

ହେଉଛନ୍ତି ସେମାନଙ୍କ ମଧ୍ୟରୁ ଯେଉଁମାନେ ସରକାରୀ ସାହାଯ୍ୟରୁ ବଞ୍ଚିତ ହୋଇ ଯାଉଛନ୍ତି ବା ଯେଉଁମାନେ ଭୟ ଅଥବା ଅଜ୍ଞତାରୁ ସୁବିଧା ନେଇ ପାରୁନାହାନ୍ତି ସେହିମାନଙ୍କ ପାଇଁ କିଛି କରିବି ବୋଲି ମନେ ମନେ ଅନେକ ଦିନ ଚିନ୍ତା କଲି । ତା ପୂର୍ବରୁ ମୋ ମନରେ ଆଶ୍ରମ କରିବାର କଳ୍ପନା ନଥିଲା । କୌଣସି ଏକ ଆଶ୍ରମ ସହ ଘନିଷ୍ଠ ଭାବେ ଲିପ୍ତ ରହିବା ଅପେକ୍ଷା ବିଭିନ୍ନ ଅଞ୍ଚଳରେ ବୁଲି ଅଧିକ ଲୋକଙ୍କ ସୁଖ ଦୁଃଖରେ ଭାଗୀ ହେବାକୁ ମୋର ଆକାଂକ୍ଷା ରହିଆସିଛି । ତଥାପି ଓଡ଼ିଶାର ଏକ ପଛୁଆ ଅଞ୍ଚଳ ବାଲିଗୁଡ଼ାରେ ଏହି ଅନୁଷ୍ଠାନ କରିବାକୁ ସହରର ହରିଜନ ବସ୍ତିରେ ଖଣ୍ଡେ ଜାଗା କିଣିଲି । ୧୯୭୩ ରେ ବନବାସୀ ସେବା ସମିତି ନାମରେ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସେହିଠାରେ କାମ କଲା । ଯେଉଁ ଆଦିବାସୀ ଝିଅମାନେ ଅଷ୍ଟମ, ନବମ ଶ୍ରେଣୀ ପାସ୍ କରି ପଢ଼ା ଛାଡ଼ି ଦେଉଥିଲେ ସେମାନଙ୍କୁ କିଛି ଦିନ ପାଠ ପଢ଼ାଇ ମାଟ୍ରିକ୍ ପରୀକ୍ଷା ପାଇଁ ପ୍ରସ୍ତୁତ କରିବାକୁ ଠିକ୍ କଲୁ । କୋରାପୁଟ ଓ ଫୁଲବାଣୀ ଜିଲ୍ଲାର ୨୫ ଜଣ ଆଦିବାସୀ ହରିଜନ ଝିଅଙ୍କୁ ୧୯୭୩ରେ ସ୍ୱଳ୍ପ ମିଆଦି ଶିକ୍ଷାଦାନ ଆରମ୍ଭ ହେଲା । ୧୯୭୪ରେ ଆଉ ୨୫ ଜଣ ଛାତ୍ରୀ ଯୋଗଦେଲେ । ୧୯୭୫ରେ ଜରୁରୀକାଳୀନ ପରିସ୍ଥିତି ଜାରି ହେବା ବେଳେ ମୁଁ ଭାବିଲି, ସମାଜ ସଂସ୍କାର ସହ ରାଜନୀତିକୁ ଯୋଡ଼ିବା ଠିକ୍ ହେବନାହିଁ । ତେଣୁ ଏ ଅନୁଷ୍ଠାନରୁ ଇସ୍ତଫା ଦେଇଦେଲି । ଶ୍ରୀ ଉଦ୍ଧବ ଚନ୍ଦ୍ର ଜେନା ନାମକ ଜଣେ ଉତ୍ସାହୀ ଯୁବକ ସମ୍ପାଦକ ଭାବେ ରହି ସଂସ୍ଥାର କାମ ଦେଖିଲେ । ୧୯୭୭ ମସିହାରେ ରାଜ୍ୟ ଗୋଷ୍ଠୀ ଉନ୍ନୟନ ବିଭାଗ ଓ କେନ୍ଦ୍ର ସରକାରଙ୍କ ସମାଜ ମଙ୍ଗଳ ବିଭାଗ ସହାୟତାରେ ୫୦ ରେ ଏକ ଆଶ୍ରମ ଖୋଲିଗଲା । ଯେଉଁ ଛୋଟ ଛୋଟ

ଆଦିବାସୀ ହରିଜନ ପିଲାଙ୍କର ବାପା କିମ୍ବା ମାଆ ମରି ଯାଇଛନ୍ତି ଅବା ଯେଉଁ ଅତି ଗରିବ ଆଦିବାସୀ ଓ ହରିଜନ ଲୋକେ ନିଜ ପିଲାଙ୍କୁ ନିମ୍ନତମ ସୁବିଧା ଦେଇ ପାରୁନାହାନ୍ତି ସେମାନଙ୍କୁ ଏ ଅନୁଷ୍ଠାନରେ ରଖାଯାଉଛି । ଏହା ସେମାନଙ୍କ ପାଇଁ ଘର, ପ୍ରଥମେ ୫୦ ଜଣ ଶିଶୁ ରହୁଥିଲେ ଏବେ ଶହେରୁ ଅଧିକ ପିଲା ଅଛନ୍ତି ।"

ତାଙ୍କର ନୈତିକ ଓ ଆଧ୍ୟାତ୍ମିକ ଭାବେ ଆଶ୍ରମରେ ଉନ୍ନତି-ଫଳତ ହେଉଛି । ତାହା କେବଳ ସରକାରୀ ସାହାଯ୍ୟ ପ୍ରାପ୍ତ ଏକ ଅନାଥାଶ୍ରମ ନୁହେଁ, ତା ପଛରେ ଅଛି ବିଶ୍ୱନାଥଙ୍କ ଶୁଭେଚ୍ଛା । ତାଙ୍କର ଇଚ୍ଛା, କୌଣସି ଏକ ଆଦିବାସୀ ଗ୍ରାମରେ ସ୍ଥାୟୀଭାବେ ରହିବେ । ସମସ୍ତ ଅନୁଷ୍ଠାନରୁ ମୁକ୍ତ ରହିବେ । ଆଦିବାସୀମାନଙ୍କ ପାଇଁ ଓ ସବୁଠାରୁ ତଳେଇ ଥିବା ଲୋକଙ୍କ ପାଇଁ ପ୍ରତ୍ୟକ୍ଷଭାବେ କାମ କରିବେ ।

ସ ମା ପ୍ତ